# ତୁମମାନଙ୍କର ଅତିପ୍ରିୟ...

# NP ଡବଲ ବବଲ ଗମ୍




## ବର୍ତ୍ତମାନ ନୂଆ ଇଣ୍ଟରନ୍ୟାସନାଲ ପ୍ୟାକିଙ୍ଗରେ

ହଁ, ପିଲାମାନେ : ତୁମମାନଙ୍କ ପାଇଁ ସୁଖବାଦ ! ଆମେ ବର୍ତ୍ତମାନ 'ଅଦ୍ଭୁତ ଭଲ' ହୋଇସାରିଛୁ (ମାନେ ପୂର୍ବ ଅପେକ୍ଷା ଅନେକ ଭଲ) । ପ୍ରକୃତରେ ଆଜ ଆମେ ଯେତିକି ଖୁସି ହେଉଛୁ ସେତିକି ତୁମେମାନେ । ଜାଣିଛ କାହିଁକି ? କାରଣ ଆମେ ଆମର ନୂଆ ଇଣ୍ଟରନ୍ୟାସନାଲ ର୍‍ୟାପର ରେ ଗମର ଖୁସିକୁ ଗୁଡ଼େଇ ନେଇଛୁ । କେବଳ ଏତିକି ନୁହେଁ ପିଲାମାନେ ! ବର୍ତ୍ତମାନ ଆମେ ଏହାର ସ୍ୱାଦକୁ ଅଦ୍ଭୁତ ଭଲ କରିଛୁ ଯାହା ଫଳରେ ବେଶୀ ସମୟ ପର୍ଯ୍ୟନ୍ତ ତୁମେମାନେ ଏହାର ମଜା ଉପଭୋଗ କରି ପାରିବ । ନୂଆ NP ଡବଲ ବବଲ ଗମ ରେ ତୁମେମାନେ ବର୍ତ୍ତମାନ ବେଶୀ ଫୋଟକା ତିଆରି କରିପାରିବ, ବେଶୀ ମଜା ପାଇପାରିବ । ବର୍ତ୍ତମାନ ତ ତୁମେମାନେ ଜାଣି ପାରୁଥିବ ଆମେ 'ଅଦ୍ଭୁତ ଭଲ' କେମିତି ହୋଇ ଯାଇଛୁ— ମାନେ 'ସବୁଠୁ ଭଲ' କାହିଁକି ?

(ପ୍ରତ୍ୟେକ ପ୍ୟାକେଟରେ ଫରେନ କାର ର ଏକ ରଙ୍ଗୀନ ଚିତ୍ର ରହିଛି ! ଶୀଘ୍ର ସଞ୍ଚୟ ହୋଇ ଯାଅ— ରୋମାଞ୍ଚକର ଭ୍ରମଣ ପାଇଁ !)










ଦି ନ୍ୟାସନାଲ ପ୍ରଡକ୍ଟସ,
..., ଡଭଲ ବରାସାଣ୍ଡ୍ରା, ବାଙ୍ଗାଲୋର

NP ବବଲ ଗମ—
ଗୁଣବତ୍ତାର ପ୍ରତୀକ ଆଇ ଏସ ଆଇ ମୋହର ...

21·7·79

# ଜହ୍ନମାମୁଁ -କ୍ୟାମେଲ ରଙ୍ଗ ପ୍ରତିଯୋଗୀତା





## ପ୍ରବେଶିକା ଚାନ୍ଦା ବିହୀନ

**ପୁରସ୍କାର ହାସଲ କରନ୍ତୁ ।**

- କ୍ୟାମେଲ — ୧ମ ପୁରସ୍କାର ଃ ୧୫
- କ୍ୟାମେଲ — ୨ୟ ପୁରସ୍କାର ଃ ୧୦
- କ୍ୟାମେଲ — ୩ୟ ପୁରସ୍କାର ଃ ୫
- କ୍ୟାମେଲ — ୫ ଗୋଟି ସାନ୍ତ୍ୱନା ଦାୟକ ପୁରସ୍କାର
- କ୍ୟାମେଲ — ୧୦ ଗୋଟି ପ୍ରମାଣ ପତ୍ର ।

ଛବି ଅଙ୍କାଯାଇଥିବା ଡାଗର ଧାର ଦେଇ କାଟନ୍ତୁ ।

ଏଥିରେ କେବଳ ୧୬ ବର୍ଷ ବୟସ ପର୍ଯ୍ୟନ୍ତ ଛାତ୍ରମାନେ ଅଂଶ ଗ୍ରହଣ କରିପାରିବେ । ପୂର୍ବରେ ଥିବା ଛବିକୁ ଯେ କୌଣସି କ୍ୟାମେଲ ରଙ୍ଗରେ ରଙ୍ଗୀନ କରନ୍ତୁ । ଆପଣଙ୍କର ରଙ୍ଗୀନ ଚିତ୍ରକୁ ନିମ୍ନ ଠିକଣାରେ ପଠେଇ ଦିଅନ୍ତୁ । **P.B. No. 9928, COLABA, Bombay-400 005.**

ଏହାରି ଫଳାଫଳ ଚୂଡାନ୍ତ ଏବଂ ଏଥି ସମ୍ବନ୍ଧୀୟ କୌଣସି ଚିଠିପତ୍ର ବିଚାରକୁ ନିଆଯିବ ନାହିଁ ।

**Name.** _ _ _ _ _ _ _ _ _ _ _ _ _ _ **Age** _ _ _ _ _ _ _ _ _ _ _ _ _

**Address.** _ _ _ _ _ _ _ _ _ _ _ _ _ _ _ _ _ _ _ _ _ _ _ _ _ _ _

ଆପଣଙ୍କ ନାମ ଓ ଠିକଣା ଇଂରାଜୀରେ ଲେଖନ୍ତୁ

**CONTEST NO. 10**

ଦୟାକରି ସଂପୂର୍ଣ୍ଣ ଚିତ୍ର ପେଣ୍ଟିଂ ହେବାପ୍ରତି ଧ୍ୟାନ ରଖନ୍ତୁ ।

ଏହି ପଠାଇବାର ଶେଷ ତାରିଖ ଃ *31-8-1979*

Vision

'ଆପଣଙ୍କ କେଶ
ଆବଶ୍ୟକ କରେ

# ରୀଠାର ଯତ୍ନ

ରୀଠା ଏକ ଉତ୍କୃଷ୍ଟ କେଶ ପ୍ରସାଧନ ସାମଗ୍ରୀ ଅତ୍ୟଧିକ ମାତ୍ରାର ନିର୍ଯ୍ୟାସରେ ପ୍ରସ୍ତୁତ ଓ ମନମତାଣିଆ ସୁଗନ୍ଧଯୁକ୍ତ । ଏହା ବଳାସମସ୍ତ୍ରୀ ପ୍ରାକୃତିକ କେଶ ବଢ଼ାଇବା ଓ ମସ୍ତିଷ୍କ ଥଣ୍ଡା କରିବା ନିଶ୍ଚିତ । ରୀଠା ପୁରୁଷ ଓ ମହିଳା ଉଭୟଙ୍କ ପାଇଁ ଏକ ଆଦର୍ଶ ପ୍ରସାଧନ ଦ୍ରବ୍ୟ ।







ରୀଠା ମନୋହର କେଶ ବଢ଼ାଏ
ଆଜି ଏକ ବୋତଲ କିଣନ୍ତୁ
ସବୁଠାରେ କିଣିବାକୁ ମିଳୁଛି

ଭେଣ୍ଟୋ କୋ:, ବମ୍ବେ ✱ କଲକତା ✱ ମାନ୍ଦ୍ରାଜ

# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'
ସଞ୍ଚାଳକ : ନାଗିରେଡ୍ଡୀ

---

ପଚିଶ ବର୍ଷ ତଳେ 'ଚନ୍ଦାମାମା'ରେ ପ୍ରକାଶିତ ଗୋଟିଏ କାହାଣୀ ଏ ସଂଖ୍ୟା 'ଜହ୍ନମାମୁଁ'ରେ ପୁନଃ ପ୍ରକାଶ କରାଯାଇଛି । କାହାଣୀଟି ହୃଦୟସ୍ପର୍ଶୀ । ଜଣେ ବିଜୟୀ ରାଜପୁତ୍ର ମାନବିକତାବୋଧ ଦ୍ୱାରା ଅନୁପ୍ରାଣିତ ହୋଇ ପରାଜିତ ରାଜା ଆଗରେ ନିଜେ ପରାଜିତ ବୋଲି ଅଭିନୟ କରିଥିଲେ । ବାସ୍ତବିକ, ଦୟା, ସମ୍ଭ୍ରମ, ଏସବୁ ଆଗରେ ଅହମିକା-ପ୍ରଣୋଦିତ ଜୟ-ପରାଜୟର ମୂଲ୍ୟ କ'ଣ ?

## ଅମରବାଣୀ

ସାଧୋଃ ପ୍ରକୋପିତସ୍ୟାପି ମନୋ ନାୟାତି ବିକ୍ରିୟାମ୍ ।
ନ ହି ତାପୟିତୁଂ ଶକ୍ୟଂ ସମୁଦ୍ରାମ୍ଭସ୍ତୃଣୋଲ୍କୟା ॥

ଯିଏ ପ୍ରକୃତ ସାଧୁ, ତାକୁ ଯେତେ ପ୍ରକାରେ ଉସୁକାଇଲେ ବି ସେ ଉତ୍ତେଜିତ ହୁଏ ନାହିଁ—ଯେମିତି ଘାସଗୁଳ୍ମ ଜଳାଇ ସମୁଦ୍ର ନୀରକୁ ଉଷୁମ କରାଯାଇ ପାରେ ନାହିଁ ।

---

ବର୍ଷ : ୧୩ ଅଗଷ୍ଟ ୧୯୭୯ ଅଙ୍କ : ୨

ପ୍ରତିସଂଖ୍ୟା : ଟ୧.୨୫ ବାର୍ଷିକ ମୂଲ୍ୟ : ଟ୧୫.୦୦






## ଚନ୍ଦ୍ରଶେଖର ରାଓ, ରାଉରକେଲା (ଓଡ଼ିଶା)

ପ୍ରଶ୍ନ : 'ଅଗସ୍ତ୍ୟ' ନାମକ କାହାଣୀରେ କୁହାଯାଇଛି ଇଲ୍ୱଳ ତା' ଭାଇ ବାତାପିକୁ ଛେଳି ରୂପଦେଇ ତାକୁ ରାନ୍ଧି ଅଗସ୍ତ୍ୟଙ୍କୁ ଖାଇବାକୁ ଦେଇଥିଲା । ପ୍ରାଚୀନ କାଳରେ ବ୍ରାହ୍ମଣମାନେ କ'ଣ ଛେଳି ମାଂସ ଭକ୍ଷଣ କରୁଥିଲେ ?

ଉତ୍ତର : ଭାରତ ଏକ ବିଶାଳ ଦେଶ । ଭିନ୍ନ ଭିନ୍ନ ଯୁଗରେ ଭାରତର ଭିନ୍ନ ଭିନ୍ନ ପ୍ରାନ୍ତରେ ଭିନ୍ନ ଭିନ୍ନ ରୀତି ପ୍ରଚଳିତ ଥିଲା । ବ୍ରାହ୍ମଣମାନେ ନିରାମିଷାଶୀ ବି ଥିଲେ, ମାଂସ ବି ଖାଉଥିଲେ । ଆଉ ଗୋଟିଏ କଥା ଭୁଲିଗଲେ ଚଳିବ ନାହିଁ । ଅଗସ୍ତ୍ୟ ଥିଲେ ଋଷି । ବ୍ରାହ୍ମଣମାନଙ୍କ ଭଳି ସେ ସମାଜର ଅଙ୍ଗ ବିଶେଷ ନ ଥିଲେ । ତେଣୁ ତାଙ୍କ ଆଚାର ବ୍ୟବହାରକୁ ବ୍ରାହ୍ମଣ ସମାଜର ଆଚାର ବ୍ୟବହାରର ପ୍ରତିଫଳନ କୁହାଯାଇ ନ ପାରେ । ତା'ଛଡ଼ା ଇଲ୍ୱଳ ବାତାପିଙ୍କ ଛଳନା ବୁଝି ସେମାନଙ୍କ ଅନ୍ତ କରିବା ଥିଲା ତାଙ୍କ ଉଦ୍ଦେଶ୍ୟ ।

## ଟି. ଏଲ୍. ଶ୍ରୀନିବାସ, ୱାରଙ୍ଗଲ (ଆନ୍ଧ୍ର)

ପ୍ରଶ୍ନ : ରାମାୟଣ, ମହାଭାରତ ଓ ପୁରାଣମାଳା କବିକଳ୍ପନା ମାତ୍ର, ନା ବାସ୍ତବ ବିବରଣୀ ?

ଉତ୍ତର : ରାମାୟଣ, ମହାଭାରତ ଓ ପୁରାଣମାନଙ୍କରେ ବାସ୍ତବ ଘଟଣାର ବିବରଣୀ ଅଛି; ସଙ୍ଗେ ସଙ୍ଗେ କବି-କଳ୍ପନା ମଧ୍ୟ ରହିଛି । ବାଲ୍ମୀକି ଓ ବ୍ୟାସଦେବ କୃତ ଦୁଇ ମହାକାବ୍ୟ (ରାମାୟଣ ଓ ମହାଭାରତ) ଭାରତର ସବୁ ବଡ଼ ବଡ଼ ଭାଷାର କବିମାନଙ୍କୁ ନିଜ ନିଜ ଭାଷାରେ ରାମାୟଣ ଓ ମହାଭାରତର ପୁନର୍ଲିଖନ କରିବାକୁ ଉଦ୍‌ବୁଦ୍ଧ କରିଛି ମଧ୍ୟ । ସେତେବେଳେ ସେସବୁ କବିମାନେ ବାଲ୍ମୀକି ଓ ବ୍ୟାସଦେବଙ୍କଠାରୁ ଭିନ୍ନ ନିଜ ନିଜ ମୌଳିକ କଳ୍ପନାସବୁକୁ ମଧ୍ୟ ନିଜ ନିଜ ରଚନାରେ ସ୍ଥାନ ଦେଇଛନ୍ତି । ଧରନ୍ତୁ ଓଡ଼ିଶାର ଆଦି-କବି ସାରଳା ଦାସଙ୍କ କଥା । ତାଙ୍କ ରଚିତ ମହାଭାରତରେ ଏଭଳି ମୌଳିକ ଶକ୍ତିଶାଳୀ ନୂଆ ନୂଆ କାହାଣୀ ତଥା ବ୍ୟାଖ୍ୟା ରହିଛି, ଯାହାକୁ କେବଳ କଳ୍ପନା ବୋଲି କୁହାଯାଇ ପାରିବ ନାହିଁ । ସାରଳା ଦାସ ଥିଲେ ଜଣେ ମହାନ୍ ଦିଗ୍‌ଦ୍ରଷ୍ଟା ଋଷି । ତାଙ୍କ ପ୍ରେରଣା ଖାଲି କଳ୍ପନା ନୁହେଁ, ବରଂ ନୂଆ ନୂଆ ତତ୍ତ୍ୱର ସ୍ଫୁରଣ ।

ପୁରାଣରେ ଉଭୟ ଘଟଣା ଓ କଳ୍ପନାର ମିଶ୍ରଣ ରହିଛି ।



# ପଞ୍ଚତନ୍ତ୍ର

[ ୩ ]

## ଲୋଭୀ ବ୍ରାହ୍ମଣ ଓ ନିରୀହ ନେଉଳ

ଦେବଶର୍ମା ଥିଲା ଜଣେ ଗରିବ ବ୍ରାହ୍ମଣ । ସେ ଓ ତା' ସ୍ତ୍ରୀ ସର୍ବଦା ମନଦୁଃଖରେ ଥିଲେ । କାରଣ ସେମାନଙ୍କର ସନ୍ତାନ ସନ୍ତତି ନ ଥିଲେ । ସେମାନେ ଗୋଟାଏ ନେଉଳକୁ ପାଳିଥିଲେ । ତାକୁହିଁ ନିଜର ଶିଶୁ ଭଳି ଦେଖୁଥିଲେ ।

କିଛିଦିନ ପରେ ବ୍ରାହ୍ମଣୀ ଗୋଟିଏ ପୁତ୍ର ସନ୍ତାନ ପ୍ରସବ କରନ୍ତେ ଦମ୍ପତିଙ୍କର ଆନନ୍ଦ କହିଲେ ନ ସରେ । ସେମାନେ ନୟନ-ପିତୁଳା ଭଳି ସନ୍ତାନର ସେବା ଯତ୍ନ କରିବାକୁ ଲାଗିଲେ । ସବୁବେଳେ ବ୍ରାହ୍ମଣ ଓ ବ୍ରାହ୍ମଣୀ ଯିଏ ହେଲେ ସନ୍ତାନ ପାଖରେ ବସିଥାଏ ।

ପୁଅଜନ୍ମ ହେବା ପୂର୍ବରୁ ନେଉଳ ଅତି ଆଦରରେ ବଢ଼ି ଯେଣେ ଇଚ୍ଛା ତେଣେ ଘରର ଚାରିଆଡ଼େ ଘୂରି ବୁଲୁଥାଏ । ବର୍ତ୍ତମାନ ବ୍ରାହ୍ମଣ ଓ ବ୍ରାହ୍ମଣୀ ମନରେ ଏଇ ଆଶଙ୍କା ଜାତ ହେଲା—ନେଉଳ ପୁଅର କିଛି ଅନିଷ୍ଟ କରିବ ନାହିଁ ତ ?

ସନ୍ତାନ ଜନ୍ମ ହେବାର ଦଶମ ଦିନ ବ୍ରାହ୍ମଣୀ ନଦୀକୁ ସ୍ନାନ କରିବାକୁ ଗଲା । ସେ ତା' ସ୍ୱାମୀକୁ କହିଗଲା, "ମୁଁ ଆସିବା ଯାଏ ପୁଅକୁ ଜଗି ବସିଥିବ । କୁଆଡ଼େ ଯିବ ନାହିଁ ।"

ବ୍ରାହ୍ମଣ ବସିଥାଇ ଜଣେ ବାଟୋଇଠାରୁ ଶୁଣିଲା, ମହାରାଣୀ ସେତିକିବେଳେ ବ୍ରାହ୍ମଣମାନଙ୍କୁ ଦାନ ଦେଉଛନ୍ତି ।

ଦାନ ଲୋଭରେ ବ୍ରାହ୍ମଣ ତତ୍‌କ୍ଷଣାତ୍ ଘରକୁ କବାଟ ଆଉଜାଇଦେଇ ବାହାରିଗଲା ।

ଶିଶୁ ଯେଉଁ କୋଠରୀ ଭିତରେ ଶୋଇଥିଲା, ସେଠାରେ ହଠାତ୍ ଦେଖା ଦେଲା ଗୋଟାଏ

ଅପରୀକ୍ଷିତ କାରକମ୍



ବିଷଧର ସାପ । ନେଉଳ ତାକୁ ଦେଖିପକାଇ ତା' ଉପରକୁ ଲମ୍ଫ ଦେଇ ତାକୁ ମାରିପକାଇଲା ।

ଦାନ ଧରି ବ୍ରାହ୍ମଣ ଘରକୁ ଫେରିବା ମାତ୍ରେ ନିଜର ଅଭ୍ୟାସ ଅନୁସାରେ ନେଉଳ ତା' ପାଖକୁ ଦୌଡ଼ିଗଲା । ବ୍ରାହ୍ମଣ ଦେଖିଲା, ନେଉଳ ପାଟିରେ ରକ୍ତ ଲାଗିଛି ।

ବ୍ରାହ୍ମଣ ଚମକି ପଡ଼ିଲା । ମୁହୂର୍ତ୍ତକ ଭିତରେ ତା' ମନକୁ କେତେ ପାପଚିନ୍ତା ଘାରି ପକାଇଲା । କାହିଁକି ସେ ଦାନ ଗ୍ରହଣ କରିବାକୁ ଗଲା ସେକଥା ଭାବି ଭୀଷଣ ବିମର୍ଷ ବୋଧ କଲା ।

"ହାୟ, ଏ ଦୁଷ୍ଟ ଆମେ କେହି ନ ଥିଲା ବେଳେ ପୁଅକୁ କାମୁଡ଼ି ରକ୍ତାକ୍ତ କରିଦେଇଛି ।" ଏହା କହି ବ୍ରାହ୍ମଣ ସଙ୍ଗେ ସଙ୍ଗେ ଲାଠିରେ ନେଉଳକୁ ବାଡ଼େଇ ଦେଲା । ନେଉଳ ମଲା ।

କିନ୍ତୁ ତା'ପରେ ଘର ଭିତରକୁ ଯାଇ ସେ ଯେତେବେଳେ ପୁଅ ଚୁପ୍‌ଚୁପ୍ ଶୋଇଥିବାର ଓ ଅଦୂରରେ ସାପଟି ମରି ପଡ଼ିଥିବାର ଦେଖିଲା, ସେତେବେଳେ ସେ କେଡ଼େ ଅନ୍ୟାୟ କରିଛି ତାହା ବୁଝିଲା ।

"ମୁଁ କେଡ଼େ ବଡ଼ ପାପୀ ! ଯେଉଁ ନେଉଳ ମୋ ପୁଅର ପ୍ରାଣ ରକ୍ଷା କରିଥିଲା, ତାକୁହିଁ ମୁଁ ପିଟି ମାରିଛି !" ଏହା କହି ସେ ଦୁଃଖରେ ମୁଣ୍ଡ ପିଟିଲା ।

କିଛି ସମୟ ପରେ ସେ ନେଉଳକୁ ଉଠାଇ ତାକୁ ପାଣି ପିଆଇ ତା' ଚେତା ଫେରାଇ ଆଣିବାର ଚେଷ୍ଟା କଲା । କିନ୍ତୁ ନେଉଳର ପ୍ରାଣ ଥିଲେ ତ ଚେତା ଫେରିବ । ବ୍ରାହ୍ମଣର ଚେଷ୍ଟାର କୌଣସି ଫଳ ହେଲା ନାହିଁ ।

ନଦୀରୁ ଲେଉଟି ବ୍ରାହ୍ମଣୀ ତା' ସ୍ୱାମୀର ସେ ଅବସ୍ଥା ଦେଖି ଆଶ୍ଚର୍ଯ୍ୟ ହେଲା । ବ୍ରାହ୍ମଣ ତାକୁ ସବୁ ଜଣାଇଲା । ବ୍ରାହ୍ମଣୀ ଦୁଃଖ କରି କହିଲା, "ଲୋଭ ସମ୍ବରଣ କରି ନ ପାରି ତୁମେ କେଡ଼େ ଭୁଲ କଲ ! ମହାରାଣୀ ଦାନ ଦେବା କଥା ଶୁଣି ମଧ୍ୟ ତୁମେ ଶିଶୁକୁ ଏକାକୀ ଛାଡ଼ି ଯିବା ଉଚିତ ହୋଇ ନାହିଁ । ଯଦି ଗଲ ତେବେ

ନେଉଳକୁ ବାଡ଼େଇ ମାରିବା ପୂର୍ବରୁ ଥରେ ଘର ଭିତରେ ପଶି ଅବସ୍ଥା ଦେଖିବା ଉଚିତ ଥିଲା । ଆମ ଭଳି ସାଧାରଣ ଲୋକଙ୍କର ଆଶା ଓ କାମନା ରହିବା ସ୍ୱାଭାବିକ । କିନ୍ତୁ ଲୋଭୀ ହେବା ଭିନ୍ନ କଥା ସେ ଚାରି ବନ୍ଧୁଙ୍କ କଥା ମନେପଡ଼ୁଛି ।"



"କ'ଣ ସେ କାହାଣୀ ?" ବ୍ରାହ୍ମଣ ପଚାରିଲା । ବ୍ରାହ୍ମଣୀ ଗପିଲା :

## ଚାରି ଲୋଭୀ

ଗୋଟିଏ ଗାଁରେ ଚାରି ଯୁବକ ଥିଲେ । ସେମାନେ ହେଲେ ଅଳ୍ପ ଲୋଭୀ, ଲୋଭୀ, ଅତି-ଲୋଭୀ ଓ ଅତ୍ୟନ୍ତ ଲୋଭୀ । ସେମାନେ ଥିଲେ ପରସ୍ପରର ଗାଢ଼ ବନ୍ଧୁ ।

ଦିନେ ଅତ୍ୟନ୍ତ ଲୋଭୀ ଅନ୍ୟ ତିନିଜଣଙ୍କୁ କହିଲା, "ଭାଇମାନେ ! ଗରିବ ହୋଇ ରହିବା-ଠାରୁ ବଳି ଦୁଃଖର କଥା ଆଉ କିଛି ନାହିଁ । ବିତ୍ତହୀନ ହୋଇ ବନ୍ଧୁବାନ୍ଧବଙ୍କ ସମାଜରେ ରହିବା ଅପେକ୍ଷା ବଣ ଭିତରେ ଭୟଙ୍କର ଜୀବଜନ୍ତୁଙ୍କ ଗହଣରେ ବାସ କରିବା ଶ୍ରେୟସ୍କର । ତୁମେ ଯେତେ ଗୁଣର ଅଧିକାରୀ ହୋଇଥାଅ ନା କାହିଁକି, ଗରିବ ହୋଇଥିଲେ ତୁମକୁ କେହି ପଚାରିବେ ନାହିଁ । ଭୃତ୍ୟ ଯେତେ ବିଶ୍ୱସ୍ତ ହୋଇଥିଲେ ବି ଖାଉନ୍ଦ ତା' ପ୍ରତି ତାଚ୍ଛଲ୍ୟପୂର୍ଣ୍ଣ ବ୍ୟବହାର କରେ । ତୁମେ ଅନ୍ୟମାନଙ୍କର ଯେତେ ଉପକାର କର ନା କାହିଁକି, ସେମାନେ ସେକଥା ଭୁଲିଯିବେ ଓ ତୁମ ଆଡ଼କୁ ଦୃଷ୍ଟିପାତ ମଧ୍ୟ କରିବେ ନାହିଁ । କିନ୍ତୁ ତୁମର ବିତ୍ତ ଥିଲେ 'ଆଜ୍ଞା, ଅବଧାନେ' କହି ତୁମ ପଛରେ ଗୋଡ଼ାଉଥିବେ । ଏହା ହେଲା ଦୁନିଆର ରୀତି ।"

"ତୁମେ ସତ କହୁଛ । କିନ୍ତୁ କରାଯିବ କ'ଣ ?" ମିତ୍ରମାନେ ପଚାରିଲେ ।

"ଘରେ ବସି ରହିଲେ ଆମ ଅବସ୍ଥାର କୌଣସି ପରିବର୍ତ୍ତନ ହେବ ନାହିଁ । ଚାଲ ବିଦେଶ ଯିବା । ହୁଏତ ହଠାତ୍ ଭାଗ୍ୟ ଖୋଲି-

ଯିବ ।" ଅତ୍ୟନ୍ତଲେଖା ପ୍ରସ୍ତାବ ଦେଲା । ଚାରି-ବନ୍ଧୁ ଘରୁ ବାହାରିପଡ଼ିଲେ ।

କେଇଦିନ ପରେ ସେମାନେ ଯାଇ ଅବନ୍ତୀ ରାଜ୍ୟରେ ପହଞ୍ଚିଲେ । ସିପ୍ରା ନଦୀରେ ସ୍ନାନ କରି ସେମାନେ ତଟବର୍ତ୍ତୀ ଶିବମନ୍ଦିରକୁ ଯାଇ ଦିଅଁଙ୍କୁ ପ୍ରଣାମ କରି ବାହାରିବା ବେଳେ ଜଣେ ତାନ୍ତ୍ରିକ ସନ୍ନ୍ୟାସୀଙ୍କୁ ଦେଖିଲେ ଓ ତାଙ୍କୁ ଅନୁ-ସରଣ କରି ତାଙ୍କ ମଠରେ ଯାଇ ପହଞ୍ଚିଲେ ।

"କିଏ ତୁମ୍ଭେମାନେ ? କୁଆଡ଼ୁ ଆସିଲ, ଯାଉଛ ବା କୁଆଡ଼େ ? ମୋଠେଇଁ ତୁମ କାମ କ'ଣ ?" ସନ୍ନ୍ୟାସୀ ପଚାରିଲେ ।

ଯୁବକମାନେ ଉତ୍ତର ଦେଲେ, ଆପଣଙ୍କ ନିକଟରୁ କିଛି ଲୁଚାଇବା ଆମର ଉଦ୍ଦେଶ୍ୟ ନୁହେଁ । ଆମେ ଚାରିଜଣ କପର୍ଦ୍ଦକଶୂନ୍ୟ ଯୁବକ । ଭାଗ୍ୟ ଅନ୍ୱେଷଣରେ ବାହାରିଛୁ । ଶୁଣିଛୁ, ଅନେକ ବେଳେ ସାଧୁସନ୍ଥଙ୍କ ଦୟାରୁ ପୋତା-ଧନର ସନ୍ଧାନ ମିଳିଯାଏ । ଆମେ ପରିଶ୍ରମ କରିବାକୁ ମଧ୍ୟ କାତର ନୋହୁଁ । ଆମର ବିଶ୍ୱାସ, ଯତ୍ନ ଓ ଅଧ୍ୟବସାୟ ବଳରେ ବହୁ ଅସାଧ୍ୟ ସାଧନ ହୋଇପାରେ । ଆମ ଦାରିଦ୍ର୍ୟର ବା ଦୂର ନ ହେବ କାହିଁକି ? ପରିଶ୍ରମ ନ କଲେ କିଛି ମିଳେ ନାହିଁ । ଦେବାସୁର ସମୁଦ୍ର ମନ୍ଥନ ବେଳେ ଅସାଧ୍ୟ ପରିଶ୍ରମ କଲେ ବୋଲି ସିନା ଲକ୍ଷ୍ମୀ ମିଳିଲେ !"

"ମୋତେ କ'ଣ କହୁଛ ?" ସନ୍ନ୍ୟାସୀ ପଚାରିଲେ ।

"ମହାନୁଭବ ! ଆପଣଙ୍କ କୃପାରୁ ଯଦି ଆମକୁ କୌଣସି ଗୁପ୍ତଧନ ମିଳିଯା'ନ୍ତା, ତେବେ ଆମ ଭାଗ୍ୟ ବଦଳିଯା'ନ୍ତା । ଆମେ କେତେଦିନ ବାଟ ଚାଲିବା ପରେ ଆଜି ଆପଣଙ୍କ ଦେଖା ପାଇଲୁ, ତାହା କମ୍ ପରିଶ୍ରମ ନୁହେଁ । ଆମ ପ୍ରତି ଅନୁଗ୍ରହ ହୋଇଯାଉ ।" ଯୁବକମାନେ କହିଲେ । ସେମାନଙ୍କ ବିକଳତା ଦେଖି ସନ୍ନ୍ୟାସୀ ସେମାନଙ୍କ ଆଡ଼କୁ ଅନାଇଲେ ।





# ଭଲ୍ଲୁକ ମାନ୍ତ୍ରିକ

[ ୧୨ ]

[ରାଜା ଦୁର୍ମୁଖର ଦୁର୍ଗ ଅଧିକାର କରିଥିଲା ଯେଉଁ ସାମନ୍ତ ରାଜା, ସେ ଘାତକ ଭଲ୍ଲୁକ ଓ ତା' ଦଳକୁ ସାମନା କରିବା ନିମନ୍ତେ ତା' ନିଜ ସୈନ୍ୟମାନଙ୍କୁ ନିର୍ଦ୍ଦେଶ ଦେଲା । କିନ୍ତୁ ତାଙ୍କୁ ନାଗମଲ୍ଲ ସେ ସୈନ୍ୟମାନଙ୍କୁ କହିଲା କି ସେ ଦୁର୍ମୁଖକୁ ବନ୍ଦୀ କରି ନେଇ ଆସିଛି । ସାମନ୍ତରାଜା ବାହାରି ଆସିଲା । ରାଜା ଦୁର୍ମୁଖ ସମ୍ଭାଳି ହୋଇ ନ ପାରି ସାମନ୍ତରାଜା ଆଡ଼କୁ ଝପଟି ଯିବାରୁ ସାମନ୍ତରାଜା ଖସିଯିବାକୁ ଚେଷ୍ଟା କଲା । ତା' ପରେ··· ।]

ସାମନ୍ତରାଜା ରାଜା ଦୁର୍ମୁଖର ପ୍ରତିରୋଧ କରିବାକୁ ଚେଷ୍ଟା ନ କରି ଦୁର୍ଗ ଫାଟକ ଆଡ଼କୁ ଘୋଡ଼ା ଛୁଟାଇଦେଲା । ରାଜାର ସେ ଅବସ୍ଥା ଦେଖି ତା' ସେନାପତି ମଧ୍ୟ ସୈନ୍ୟଦଳକୁ ପଛଘୁଞ୍ଚା ଦେବାର ନିର୍ଦ୍ଦେଶ ଦେଇ ଦୁର୍ଗ ଆଡ଼କୁ ପଳାଇବାକୁ ଲାଗିଲା ।

ତା'ର ଦୁଇ ବିଶ୍ୱସ୍ତ ସୈନିକ ତା' ପାଖକୁ ଯାଇ ତାକୁ କହିଲେ, "ସେନାପତି ମହୋଦୟ, ପୁରୁଣା ରାଜା ଓ ସାମନ୍ତରାଜା ପରସ୍ପର ଲଢ଼େଇ କରନ୍ତୁ । ଉଭୟେ ହାଲିଆ ହୋଇଗଲେ ଆମେ ଘେରିଯାଇ ମାରିଦେବା । ତେଣିକି ରାଜା ହେବେ ଆପଣ ! ପୁରୁଣା ରାଜା ଯେଉଁ କେତୋଟି ଅନୁଚର ନେଇ ଆସିଛି, ସେମାନଙ୍କ ସଂଖ୍ୟା ଆମ ତୁଳନାରେ କିଛି ନୁହେଁ ।"



The name of this picture is Naranjan Sahu

ଏ ପରାମର୍ଶ ସେନାପତି ମନକୁ ଖୁବ୍ ପାଇଲା । ସେ ଘୋଡ଼ା ବୁଲାଇ ଥରେ ପରିସ୍ଥିତି ଲକ୍ଷ୍ୟ କରି ଦେଖିଲା । ସେତେବେଳେ ଘାତକଭଲ୍ଲୁକ ତାକୁ ନାଗମଲ୍ଲ ଓ ରାଜା ଦୁର୍ମୁଖର ଦେହରକ୍ଷୀ ଇତ୍ୟାଦିଙ୍କୁ ପାଟି କରି କହୁଥାଏ : "ରାଜା ଦୁର୍ମୁଖ ଦୁଃସାହସ କରି ହଠାତ୍ ଶତ୍ରୁଛାଉଣୀ ଭିତରକୁ ପଶିଯାଇ ନିଜ ଜୀବନ ବିପନ୍ନ କରିଛି । ତାକୁ ବଞ୍ଚାଇବାକୁ ହେଲେ ଆମେ ବର୍ତ୍ତମାନ ଶତ୍ରୁଦଳର ମୁକାବିଲା କରିବା ଦରକାର । ଆଗରେ ଯିଏ ପଡ଼ିବ, ତାକୁ ମାରିବାକୁ ହେବ ।"

ରାକ୍ଷସ ଉଗ୍ରଦଣ୍ଡ ତତ୍‌କ୍ଷଣାତ୍ ତା'ର ଭୟଙ୍କର ପଥର ଗଦା ଉଠାଇ ଗର୍ଜନ କରି କହିଲା, "ସାମନ୍ତ ସୂର୍ଯ୍ୟଭୂପତିର ସୈନ୍ୟମାନେ ଶୁଣ ! ରାଜା ଦୁର୍ମୁଖ ଦେହରେ ଯଦି ସାମାନ୍ୟ ଆଞ୍ଚ ଲାଗିବ, ତେବେ ତୁମମାନଙ୍କୁ ଏଇଠାରେ ଛିନ୍-ଭିନ୍ କରିଦେବି ।"

ସେ ଦୁର୍ଗ ଆଡ଼କୁ ମାଡ଼ିଗଲା ।

ରାକ୍ଷସ ଉଗ୍ରଦଣ୍ଡର ସେ ଗର୍ଜନରେ ଚମକି ପଡ଼ିଲେ ସାମନ୍ତ ରାଜାର ସୈନ୍ୟଦଳ । ପୁଣି ସେ ଦୁର୍ଗ ଆଡ଼କୁ ଅଗ୍ରସର ହେଉଥିବାର ଦେଖି ସେମାନେ କ'ଣ କରିବେ କିଛି ବୁଝି ନ ପାରି ବିକଳରେ ଏଣେତେଣେ ଅନାଇବାକୁ ଲାଗିଲେ । ପୂର୍ବରୁ ସେମାନେ କେତେଥର ଶତ୍ରୁ-ପକ୍ଷର ମୁକାବିଲା କରିଛନ୍ତି । କିନ୍ତୁ ସେସବୁ ଶତ୍ରୁ ମଣିଷ । ଉଗ୍ରଦଣ୍ଡ ଭଳି ଜୀବ ସେମାନେ ଦେଖି ନ ଥିଲେ । ରାକ୍ଷସ କଥା କାହାଣୀରେ ଶୁଣିଥିଲେ ମାତ୍ର । ସତ ରାକ୍ଷସ ଦିନେ ସେମାନଙ୍କୁ ଆକ୍ରମଣ କରିବ, ସେ କଥା ସେମାନେ ସ୍ୱପ୍ନରେ ମଧ୍ୟ ଭାବି ନ ଥିଲେ ।

ଟିକିଏ ଆଗରୁ ରାଜା ହେବାର ସ୍ୱପ୍ନ ଦେଖୁଥିଲା ଯେଉଁ ସେନାପତି, ସେ ବିକଳରେ ତା' ସୈନ୍ୟମାନଙ୍କୁ କହିବାର ଶୁଣାଗଲା, "ଏ ଭୀଷଣ ଜୀବକୁ ପାରିବା କାଠିକର । ବର୍ତ୍ତମାନ କୌଣସି ପ୍ରକାରେ ଦୁର୍ଗ ଭିତରେ ପଶିଯାଇ କବାଟ ବନ୍ଦ କରିଦେଇ ପାରିଲେ ରକ୍ଷା । ପଳାଇଚାଲ, ପଳାଇଚାଲ !"

ସେନାପତି ପଛେ ପଛେ ତା'ର ସାରା ସୈନ୍ୟଦଳ ପ୍ରାଣମୂର୍ଚ୍ଛା ଦୁର୍ଗ ଆଡ଼କୁ ପଳାଇବାକୁ ଲାଗିଲେ । ଶୁଣ୍ଢ଼କଣ୍ଠା ହାତୀ ଉପରେ ବସିଥିବା ବସ୍ତୁଆ ଚୋକାକୁ ଉଦ୍ଦେଶ୍ୟ କରି ଘାତକଭଲ୍ଲୂକ କହିଲା, "ହଇରେ, ସେ ପଳାତକ ସୈନ୍ୟମାନଙ୍କ ଆଡ଼କୁ ଶର ଚଳାଇବାକୁ ତୋ ହାତ କସ୍‌ମସ୍ କରୁଛି କି ? ଖବରଦାର୍, ସେ କାମ କରିବୁ ନାହିଁ । ଅଯଥା ରକ୍ତପାତ କରିବା ଆମ ଉଦ୍ଦେଶ୍ୟ ନୁହେଁ । କୌଣସି ମତେ ରାଜା ଦୁର୍ମୁଖକୁ ଥରେ ସିଂହାସନରେ ବସାଇପାରିଲେ ହେଲା ।"



ଘାତକଭଲ୍ଲୂକ, ତାଲୁ ନାଗମଲ୍ଲ, ଓ ରାକ୍ଷସ ଉଗ୍ରଦଣ୍ଡ ଇତ୍ୟାଦି ପଳାତକ ସାମନ୍ତ ରାଜାକୁ ପ୍ରାୟ ଧରିପକାଇବେ, ସେଇ ଅବସ୍ଥାରେ ସାମନ୍ତ ରାଜା, ତା' ସେନାପତି ଓ କିଛି ସୈନ୍ୟ ଦୁର୍ଗ ଭିତରେ ପଶିଯାଇ କବାଟ ବନ୍ଦ କରିଦେଲେ । ସେମାନଙ୍କ ସହ ରାଜା ଦୁର୍ମୁଖ ମଧ୍ୟ ଭିତରେ ପଶିଯାଇଥିଲା । ଯେଉଁ ସୈନ୍ୟମାନେ ଦୁର୍ଗ ବାହାରେ ରହିଯାଇଥିଲେ, ସେମାନେ ପ୍ରାଣବିକଳରେ ପାଚିରି ଦେହରେ ଖୁନ୍ଦିହୋଇ ଠିଆ ହୋଇଥାନ୍ତି ।

ରାକ୍ଷସ ଉଗ୍ରଦଣ୍ଡ ଦୁର୍ଗ ପାଖକୁ ଆସିବାର ଦେଖି ସେ ସୈନ୍ୟମାନେ ଆତଙ୍କରେ ଥରିବାକୁ ଲାଗିଲେ । ତାଙ୍କ ଭିତରୁ କେତେଜଣ ଅନ୍ୟ କୁଆଡ଼େ ପଳାଇବା ସମ୍ଭବ କି ନା ତାହା ଦେଖିବା ପାଇଁ ଏଣେତେଣେ ଦୃଷ୍ଟିପାତ କରୁଥାନ୍ତି । ତେବେ ଉଗ୍ରଦଣ୍ଡ ସେମାନଙ୍କ ଆଡ଼କୁ ଥରେ ମଧ୍ୟ ଦୃକ୍‌ପାତ କଲା ନାହିଁ ।

ରାକ୍ଷସ ଉଗ୍ରଦଣ୍ଡ ଦୁର୍ଗ କବାଟ ଉପରେ ଗଦାଘାତ କଲା । କିନ୍ତୁ କିଛି ଫଳ ହେଲା ନାହିଁ । ସେ ଘାତକଭଲ୍ଲୂକକୁ କହିଲା, "ବର୍ତ୍ତମାନ ତ ବିଷମ ଅବସ୍ଥା ଉପସ୍ଥିତ ଦେଖୁଛି ! ରାଜା ଦୁର୍ମୁଖ ଏକୁଟିଆ ତା' ଶତ୍ରୁମାନଙ୍କ ସହ ଦୁର୍ଗ ଭିତରେ ! ଅବଶ୍ୟ ସେ ମଲେ ଆମର କିଛି ଯାଏଆସେ ନାହିଁ; କିନ୍ତୁ ଆମେ ଯଦି ତା' ମୁଣ୍ଡ ନେଇ ଭଲ୍ଲୂକତାନ୍ତ୍ରିକ ପାଖରେ



ଯଥା ଶୀଘ୍ର ଯାଇ ସମର୍ପଣ କରିବା କଥା !"

ରାକ୍ଷସ ଉଗ୍ରଦଣ୍ଡ କଥା ଶୁଣି ଘାତକଭଲ୍ଲୂକ ଦେହ ଉପରେ ଶୀତେଇ ଉଠିଲା । କାରଣ, ସେ ଯଦି ରାଜା ଦୁର୍ମୁଖର ଛିନ୍ନଶିର ନେଇ ଭଲ୍ଲୂକ-ତାନ୍ତ୍ରିକକୁ ଦେଇ ନ ପାରିବ, ତେବେ ତାକୁ ଆଜୀବନ ଭଲ୍ଲୂକ ରୂପରେହିଁ ରହିବାକୁ ପଡ଼ିବ ! ଏତେଦିନ ମଣିଷ ହୋଇ ସେ ସମାଜରେ ଚଳି-ଆସିଛି । ଏଣିକି ଭଲ୍ଲୂକ ରୂପରେ କିପରି ସାରା ଜୀବନ ବଣଜଙ୍ଗଲରେ କଟାଇବ, ତାହାହିଁ ହେଲା ଘୋର ଚିନ୍ତାର କଥା ।

ଘାତକଭଲ୍ଲୂକ ଦେଖିଲା, ରାଜା ଦୁର୍ମୁଖର ଶିର ପାଇବାକୁ ହେଲେ ପ୍ରଥମେ ତାକୁ ତା' ଶତ୍ରୁଙ୍କ କବଳରୁ ରକ୍ଷା କରିବା ଆବଶ୍ୟକ । ସେ ତା'ର ସବୁ ଶକ୍ତି ଠୁଳ କରି "ଜୟ ଭୈରବଙ୍କର ଜୟ" କହି ନିଜ କୁଠାର ଦ୍ୱାରା ଦୁର୍ଗ ଦ୍ୱାରରେ ଆଘାତ କଲା ।

କିନ୍ତୁ ଦୁର୍ଗର ଦ୍ୱାର ଅତ୍ୟନ୍ତ ମଜଭୁତ୍ ଥିଲା । ପ୍ରହାର ଫଳରେ ଦ୍ୱାରର ତ କିଛି କ୍ଷତ. ହେଲା ନାହିଁ, ବରଂ ଘାତକଭଲ୍ଲୂକ ହାତରୁ କୁଠାରଟି ଛିଟିକିଯାଇ ଦୂରରେ ପଡ଼ିଲା ।

ବଣୁଆ ଟୋକା ସଙ୍ଗେ ସଙ୍ଗେ ହାତୀ ଉପରୁ କୁଦିପଡ଼ି ଦୌଡ଼ିଯାଇ କୁଠାରଟି ଉଠାଇନେଲା ଓ ଘାତକଭଲ୍ଲୂକକୁ କହିଲା, "ହଜୁର ! ବୃଥା-ଟାରେ ଆପଣଙ୍କ ମୂଲ୍ୟବାନ୍ କୁଠାର ନଷ୍ଟ କରନ୍ତୁ ନାହିଁ । ଦୁର୍ଗ ଭିତରକୁ ପଶିବାକୁ ହେଲେ ଏ ଦ୍ୱାରରେ ନିଆଁ ଲଗାଇ ଏହାକୁ ପୋଡ଼ି-ଦେବା ଠିକ୍ ହେବ ।"

"ବଣୁଆଟୋକା ! ତୋ ପରାମର୍ଶ ମନ୍ଦ ନୁହେଁ । କିନ୍ତୁ ଆମେ କବାଟ ପୋଡ଼ିବା ଭିତରେ ଯଦି ରାଜା ଦୁର୍ମୁଖ ଶତ୍ରୁଙ୍କ ହାତରେ ପ୍ରାଣ ଦେବ, ତେବେ ମୋ ଅବସ୍ଥା କ'ଣ ହେବ ବୁଝୁଛୁଟି ?" ଘାତକଭଲ୍ଲୂକ ଉତ୍ତେଜିତ କଣ୍ଠରେ କହିଲା ।

ରାକ୍ଷସ ଉଗ୍ରଦଣ୍ଡ କେତେପାଦ ପଛକୁ ହଟି-ଆସି ତା'ପରେ ଆଗକୁ ପ୍ରବଳ ବେଗରେ ଯାଇ ତା' ଗଦା ସାହାଯ୍ୟରେ କବାଟରେ ଆଘାତ

କଲା । ସେ ଆଘାତରେ କବାଟ ଭାଙ୍ଗିଲା ନାହିଁ, ପ୍ରାଚୀର ଦେହରୁ କେତେଖଣ୍ଡି ପଥର ଖସି ପଡ଼ିଲା । ରାକ୍ଷସ ଉଗ୍ରଦଣ୍ଡ, ଘାତକଭଲ୍ଲୂକ ଇତ୍ୟାଦି କାଳେ ପୁଣି ପାଚେରି ସେମାନଙ୍କ ଉପରେ ଧସିପଡ଼ିବ ସେହି ଆଶଙ୍କାରେ ପଛକୁ ହଟିଆସି ଅନାଇଲେ ।



ଦୁର୍ଗ ପ୍ରାଚୀର ଉପରେ ସେମାନେ ଦେଖିଲେ ଗୋଟିଏ ଆଶ୍ଚର୍ଯ୍ୟଜନକ ତଥା ଆତଙ୍କଜନକ ଦୃଶ୍ୟ । ସେଠାରେ ବସିଥିଲା ଘନକଳା ପୋଷାକ ପରିହିତ ଗୋଟାଏ ମର୍କଟରୂପୀ ଜୀବ । ତା' ହାତରେ ରହିଥିଲା ଗୋଟାଏ ଲମ୍ବ ମନ୍ତ୍ରଦଣ୍ଡ । ସେ ଦଣ୍ଡ ଶୀର୍ଷରେ ହୀରା ଖଚିତ ଭାଲୁମୁଣ୍ଡ ଶୋଭା ପାଉଥିଲା । ହୀରାସବୁ ଚକଚକ ଝଟକୁଥିଲେ ।

ଟିକିଏ ପରେ ନିଜକୁ ସମ୍ଭାଳିନେଇ ଘାତକଭଲ୍ଲୂକ ଦାନ୍ତ କଡ଼ମଡ଼ କରି ପଚାରିଲା, "ଆରେ ମର୍କଟରୂପୀ ! ତୁ ସତରେ ମର୍କଟ ନା ଗୋଟାଏ ପିଶାଚ ? ତୋ ହାତକୁ ଭଲ୍ଲୂକତାନ୍ତ୍ରିକଙ୍କ ମନ୍ତ୍ରଦଣ୍ଡ ବା ଆସିଲା କିପରି ? ସତ କହ, ନଚେତ୍..."

କର୍କଶ କଣ୍ଠରେ ସେ ଭୀଷଣ ମର୍କଟ ଉତ୍ତର ଦେଲା, "ଆଗେ କହ, ତୁ ସତ ଭାଲୁ ନା ଭାଲୁରୂପୀ ପିଶାଚ ?"

ଘାତକଭଲ୍ଲୂକ କ୍ରୋଧବଶରେ ନିଜ କୁଠାର ଉଦ୍ୟତ କଲା । କିନ୍ତୁ ଉଗ୍ରଦଣ୍ଡ ତାକୁ ନିରସ୍ତ ହେବାକୁ କହି ସଧୀର କଣ୍ଠରେ ବୁଝାଇଲା, "ଘାତକଭଲ୍ଲୂକ, ତୁମେ ତରବରରେ କୌଣସି ହାନିକର କାମ କରନାହିଁ । ହୁଏତ ଭଲ୍ଲୂକତାନ୍ତ୍ରିକଙ୍କୁ ଏ ପିଶାଚ ପରାସ୍ତ କରିଛି । ପ୍ରଥମେ ଏହା ପାଖରୁ ତଥ୍ୟ ବୁଝିବାକୁ ଚେଷ୍ଟା କରାଯାଉ ।"

ଏଣେ ଉଗ୍ରଦଣ୍ଡ ଘାତକଭଲ୍ଲୂକକୁ ଏ କଥା କହୁଥିବା ବେଳେ ବଣୁଆ ଠୋକା ମର୍କଟକୁ ଲକ୍ଷ୍ୟ କରି ଶର ନିକ୍ଷେପ କରିସାରିଥିଲା । ଶର ତା' ଆଡ଼କୁ ଧାବିତ ହେବାର ଦେଖି ମର୍କଟ ବିକଟ ଭାବରେ ହସିଲା । ଟିକିଏ ମଧ୍ୟ ନଡ଼-



ବଡ଼ ନ ହୋଇ ସେ ବାଁ ହାତ ବଢ଼ାଇ ଖୀରକୁ ଧରିପକାଇ ଡାହାଣ ହାତରେ ଥିବା ମନ୍ତ୍ରଦଣ୍ଡ ଉଠାଇ କହିଲା, "ମୋ ସାହସର ସାମାନ୍ୟ ପରିଚୟ ପାଇଛ ଆଶା କରେ । ଜାଣିରଖ, ମୁଁ ମାୟାମର୍କଟ ।"

ମର୍କଟର ରଡ଼ିରୁ ରକ୍ଷା ପାଇବା ପାଇଁ ଦୁଇ ହାତରେ ଦୁଇ କାନ ବନ୍ଦ କରି ଘାତକଭଲ୍ଲୂକ ରାକ୍ଷସ ଉଗ୍ରଦଣ୍ଡକୁ କହିଲା, "ଉଗ୍ରଦଣ୍ଡ ! ଏ ମର୍କଟବାପୁଡ଼ା ସହ ଝଗଡ଼ା କରି ଆମକୁ ମିଳିବ କ'ଣ ? ରାଜା ଦୁର୍ମୁଖ ବଞ୍ଚିଛି ନା ମଲାଣି ଆମକୁ ସେ କଥା ଜାଣିବାକୁ ହେବ । ଯଦି କବାଟ ଭାଙ୍ଗିବା ସମ୍ଭବ ନୁହେଁ, ତେବେ ଅନ୍ତତଃ ପାଚେରି ଭାଙ୍ଗିବାକୁ ପଡ଼ିବ । ତା'ର ଉପାୟ କ'ଣ କୁହ ।"

ଉଗ୍ରଦଣ୍ଡ ଭ୍ରୂ କୁଞ୍ଚିତ କରି ଘାତକଭଲ୍ଲୂକ ଆଡ଼କୁ ଅନାଇ କହିଲା, "ବାବୁ ତୁମେ ଏ ଯାଏ ବାସ୍ତବ ସମସ୍ୟାଟି କ'ଣ ତାହା ବୁଝିନାହଁ ଦେଖୁଛି । ନିଜକୁ ମାୟାମର୍କଟ ବୋଲି ଜାହିର୍ କରୁଥିବା ଏ ଜୀବ ହାତରେ ତୁମ ଭଲ୍ଲୂକତାନ୍ତ୍ରିକ ପ୍ରାଣ ଦେଇ ନାହାନ୍ତି ବୋଲି ଜାଣିଲ କିପରି ? ତାଙ୍କ ମନ୍ତ୍ରଦଣ୍ଡ ଏହା ହାତକୁ ଆସିଲା କିପରି ? ଯଦି ମୋ ଆଶଙ୍କା ସତ ହୋଇଥିବ, ତେବେ ରାଜା ଦୁର୍ମୁଖର ମୁଣ୍ଡ ପାଇଁ ତୁମକୁ ଆଉ ଚିନ୍ତା କରିବାକୁ ପଡ଼ିବ ନାହିଁ । ବୁଝୁଛ ? ଆମେ ବଣକୁ ଯାଇ ନିଶ୍ଚିନ୍ତରେ ଜୀବନ ବିତାଇବା ।"

"ଘାତକଭଲ୍ଲୂକ ମହାଶୟ ! ରାକ୍ଷସ ଉଗ୍ରଦଣ୍ଡ ଯାହା କହୁଛନ୍ତି, ତାହା ବାସ୍ତବିକ ପ୍ରଣିଧାନର ବିଷୟ ।" ଏହା କହି ଡାକୁ ନାଗମଲ୍ଲ ହାତୀ ଉପରୁ ତଳକୁ ଡେଇଁପଡ଼ିଲା ଓ ନିଜର ଦୁଇ ଅନୁଚର ତଥା ଦୁର୍ମୁଖର ଦେହରକ୍ଷୀକୁ ମଧ୍ୟ ତଳକୁ ଆସିବାକୁ ନିର୍ଦ୍ଦେଶ ଦେଲା ।

"ତୁମେମାନେ କୁହ, ଆମେ ସମସ୍ତେ ଯଦି ଦଳ ବାନ୍ଧି ବଣରେ ରହିବା, ତେବେ ଆମକୁ ପାରିବ କିଏ ?" ସେ ପଚାରିଲା ।

ଘାତକଭଲ୍ଲୂକ କ୍ରୋଧରେ ଆଖି ଲାଲ କରି କହିଲା, "ଆରେ ବଣୁଆ ଟୋକା ! ଏ ଡାକୁ

ନାଗମଲ୍ଲ ଆଡ଼କୁ ଶର ବାଗେଇ ଧରିଥା । ଏ ଯେମିତି ପଳାଇ ନ ଯାଏ ।" ଅନ୍ୟମାନଙ୍କୁ ସେ କହିଲା, "ମୁଁ ଭଲ୍ଲୂକତାନ୍ତ୍ରିକ ତଥା ରତ୍ନବର୍ମା ନାମକ ମହାନ୍ ସାହସୀ ଯୁବକଙ୍କ ସନ୍ଧାନ ନେବାକୁ ଚାହେଁ । ମୋ ସହ ଯିଏ ଯିବାକୁ ଚାହଁ, ହାତ ଉଠାଅ ।"

ରାକ୍ଷସ ଉଗ୍ରଦଣ୍ଡକୁ ଛାଡ଼ି ବାକି ସମସ୍ତେ ହାତ ଟେକିଲେ । ବଣୁଆ ଟୋକା ଶଙ୍କିତ କଣ୍ଠରେ ପଚାରିଲା, "ଭଲ୍ଲୂକ ମହୋଦୟ, ତାକୁ ନାଗମଲ୍ଲ ଓ ତା' ଅନୁଚରମାନେ ବି ଆମ ସହ ଯିବାକୁ ବାହାରିଲେଣି । କିନ୍ତୁ ଏମାନଙ୍କୁ ବିଶ୍ୱାସ କରିବା କିପରି ?"



"ଯାହାକୁ ବିଶ୍ୱାସ କରାଯାଇ ନ ପାରିବ, ଏଇଠି ତା' ଶିରଚ୍ଛେଦ କଲେ କଥା ଛିଡ଼ିବ । ଉଗ୍ରଦଣ୍ଡ, ତୁମ ସିଦ୍ଧାନ୍ତ କ'ଣ ? ଭଲ୍ଲୂକତାନ୍ତ୍ରିକଙ୍କ ପାଖରେ ତୁମର କ'ଣ କାମ ଅଛି ବୋଲି ପରା ଆଗରୁ କହୁଥିଲ ?" ଘାତକଭଲ୍ଲୂକ ପଚାରିଲା ।

"ଭଲ୍ଲୂକତାନ୍ତ୍ରିକ ବଞ୍ଚିଥିଲେ ସିନା ମୋ କାମ ହେବ !" ଉଗ୍ରଦଣ୍ଡ ଉତ୍ତର ଦେଲା ।

ପ୍ରାଚୀର ଉପରୁ ମାୟାମର୍କଟ ଚିତ୍କାର କରି କହିଲା, "ଆରେ, ଆରେ, ଦୁର୍ଗ ଭିତରେ ତ ଲଢ଼େଇ ଲାଗିଗଲାଣି ! ସୈନ୍ୟମାନେ ଦୁଇ ଦଳ ହୋଇ ଦଳେ ରାଜା ଦୁର୍ମୁଖ ତରଫରୁ ତ ଆର ଦଳକ ସାମନ୍ତ ରାଜା ତରଫରୁ ଲଢ଼ୁଛନ୍ତି ! ଖରୁ ସାମନ୍ତ ରାଜା ନିଜେ ଯୁଦ୍ଧ ନ କରି ସ୍ୱୟଂ ଆଢୁଆଳରେ ଠିଆହୋଇ ରହି ଅନ୍ୟମାନଙ୍କୁ ମତାଉଛି ।"

ଘାତକଭଲ୍ଲୂକ ଟିକିଏ ଆଶ୍ଚର୍ଯ୍ୟ ହୋଇ କହିଲା, "ଉଗ୍ରଦଣ୍ଡ, ରାଜା ଦୁର୍ମୁଖ ଜୀବିତ ଅବସ୍ଥାରେ ମୋ ହାତରେ ପଡ଼ିବାର ସମ୍ଭାବନା ରହିଛି ଦେଖୁଛି । ତାହା ହେଲେ ମୋତେ ଏ ଭାଲୁ ଦଶାରୁ ମୁକ୍ତି ମିଳିଯିବ ।"

ରାକ୍ଷସ ଉଗ୍ରଦଣ୍ଡ ବିରକ୍ତ ହୋଇ ଭୂଇଁରେ ଗଦା ବାଡ଼େଇଦେଇ କହିଲା, "ତୁମ ଭଳି ବୁଦ୍ଧୁ ମୁଁ ଆଉ ଦେଖି ନାହିଁ । ଭଲ୍ଲୂକତାନ୍ତ୍ରିକ

ଜୀବନରେ ଥାଉଁ ଥାଉଁ କେହି ତା' ମନ୍ତ୍ରଦଣ୍ଡ ଛଡ଼େଇନେଇ ପାରିବ, ତୁମେ ଏ କଥା କଳ୍ପନା କରୁଛ କପରି ?"

ତା'ପରେ ତାଳ ମାରି ମାୟାମର୍କଟର ଦୃଷ୍ଟି ଆକର୍ଷଣ କରି ସେ କହିଲା, "ମର୍କଟ ! ତୁମେ ଭଲ୍ଲୂକତାନ୍ତ୍ରିକର ମନ୍ତ୍ରଦଣ୍ଡ ମାରିଆଣି ଭଲ କରିଛ । କିନ୍ତୁ ତାକୁ ହତ୍ୟା କରି କେଉଁଠି ଫୋପାଡ଼ିଦେଇ ଆସିଛ ?"

"ମୁଁ ତ ତାକୁ ମାରିପକାଇଲି । କିନ୍ତୁ ତା' ଦେହକୁ ଜଗିବସିଛି ରତ୍ନବର୍ମା ।" ଏହା କହି ମର୍କଟ ଦୂରକୁ ଦୃଷ୍ଟିପାତ କରି ପାଟି କରି କହିଲା, "ଆରେ, ଆରେ ସେ ଭଲ୍ଲୂକତାନ୍ତ୍ରିକ ତ କୌଣସି ସଞ୍ଜୀବନୀ ବିଦ୍ୟା ଦ୍ୱାରା ପୁଣି ଜୀଇ ଉଠିଲାଣି ! ସେ ଗୋଟାଏ ମଇଁଷି ଉପରେ ବସିଛି । ରତ୍ନବର୍ମା ବସିଛି ଘୋଡ଼ା ଉପରେ । ଦୁହେଁ ଏଆଡ଼େ ଆସୁଛନ୍ତି । ପୁଣି ସେମାନଙ୍କୁ ବନ୍ଦୀ ବନାଇବା ନିମନ୍ତେ ଚନ୍ଦ୍ରଶୀଳା ନଗରୀର ରାଜା ଜୟକେତୁର ମନ୍ତ୍ରୀ ସସୈନ୍ୟେ ସେମାନଙ୍କୁ ଅନୁସରଣ କରୁଛି । ମଜା ନ ଦେଖି ମୁଁ ଏଠାରୁ ଯାଉନାହିଁ ।"

ମାୟାମର୍କଟ ମୁହଁରୁ ଏ କଥା ଶୁଣି ଘାତକଭଲ୍ଲୂକ ଧମକ ଦେଇ କହିଲା, "ଆରେ ମର୍କଟ ! ତୁ ପାଗଳ ହୋଇଗଲୁଣି ପରା ! ନ ହେଲେ ଏମିତି କ'ଣ ଗୁଡ଼ାଏ ବକୁଛୁ ?"

ଘାତକଭଲ୍ଲୂକର କଥା ଶେଷ ନ ହେଉଣୁ ସେଠାରେ ପହଞ୍ଚିଗଲେ ରତ୍ନବର୍ମା ତଥା ଭଲ୍ଲୂକତାନ୍ତ୍ରିକ ।

ମାୟାମର୍କଟକୁ ଦେଖି ଭଲ୍ଲୂକତାନ୍ତ୍ରିକ କହିଲା, "ଘାତକଭଲ୍ଲୂକ ମୋ ମନ୍ତ୍ରଦଣ୍ଡ ଚୋରି କରି ଆଣିଥିବା ଏ ମାୟାମର୍କଟ ଯେମିତି ପ୍ରାଣ ଧରି ଏଠାରୁ ପଳାଇଯାଇ ନ ପାରେ !"

ମର୍କଟ ସଙ୍ଗେ ସଙ୍ଗେ ହସିଉଠି ଦୁର୍ଗ ଭିତରକୁ ଡେଇଁପଡ଼ିଲା ।

(କ୍ରମଶଃ)





# ଅର୍ଜୁନଙ୍କ ଅଭିଯାନ

ରାଜା ବିକ୍ରମାର୍କ ପୁନର୍ବାର ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ ପୂର୍ବକ ଶବଟିକୁ ଉତାରି ଆଣି ତାକୁ କାନ୍ଧରେ ପକାଇ ଶ୍ମଶାନ ଅତିକ୍ରମ କରିବାକୁ ଆରମ୍ଭ କଲେ । ମଧ୍ୟେ ମଧ୍ୟେ ବିଜୁଳି କଟିକଟି ଅନ୍ଧକାରକୁ ଚିରି ଦେଖାଇ ଦେଉଥାଏ ଅଶରୀରୀମାନଙ୍କର ଭୟାବହ ମୁହଁ ।

ହଠାତ୍ ଶବସ୍ଥିତ ବେତାଳ କହିଉଠିଲା, "ରାଜନ୍! ତୁମ ସାହସ ଦେଖି ମୁଁ ଅଭିଭୂତ । କିନ୍ତୁ ତୁମେ ତୁମ ଆଦର୍ଶରେ କେତେ ଦୂର ଦୃଢ଼ ରହିପାର, ସେ କଥା ମୁଁ ଜାଣେନା । ତୁମ ସ୍ୱଭାବ ଶ୍ରୀକେତୁ ଭଳି ନୁହେଁ ତ ? କହୁଛି ସେ କଥା, ଶୁଣ । ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।"

ବେତାଳ ଗପିଲା : ବିକ୍ରମପୁର ନାମକ ଛୋଟ ରାଜ୍ୟର ରାଜା ଥିଲେ ଶ୍ରୀକେତୁ । କେତେ ପୁରୁଷ ଧରି ବିକ୍ରମପୁର ବିଦର୍ଭ ରାଜ୍ୟର ଏକ

ବିକ୍ରମାର୍କ କଥା

କରଦରାଜ୍ୟ ହୋଇ ରହିଥାଏ ।

କାଳକ୍ରମେ ବଦର୍ଭରେ ରାଜବଂଶ ଦୁର୍ବଳ ହୋଇଗଲା । ଶ୍ରୀକେତୁଙ୍କ ସମୟରେ ଯିଏ ବଦର୍ଭର ରାଜା, ଶ୍ରୀକେତୁଙ୍କ ବଳବିକ୍ରମ ଆଗରେ ସିଏ ଠିଆହୋଇ ପାରନ୍ତେ ନାହିଁ । ତେଣୁ ମନ୍ତ୍ରୀମାନେ ଶ୍ରୀକେତୁଙ୍କୁ କହୁଥା'ନ୍ତି, "ଆପଣ ଯୁଦ୍ଧାଭିଯାନରେ ବାହାରନ୍ତୁ । ଅକ୍ଳେଶରେ ବଦର୍ଭ ଆପଣଙ୍କ ଅଧୀନକୁ ଆସିଯିବ ।"

"ଲାଭ କ'ଣ ? ବର୍ଷକୁ ଆମେ ଅଳ୍ପ କର ଦେଉଛୁ । ବଦର୍ଭ ଆମର ଆଉ କିଛି କ୍ଷତି ତ କରୁନାହିଁ, ବରଂ ଆମ ରାଜ୍ୟକୁ ବହିଃଶତ୍ରୁ କବଳରୁ ରକ୍ଷା କରିବା ଦାୟିତ୍ୱ ବଦର୍ଭର । ବଦର୍ଭ ସହ ଯୁଦ୍ଧ କଲେ ରକ୍ତପାତ ହେବ । ମୋ ପ୍ରଜାମାନେ କଷ୍ଟ ପାଇବେ । ପୁଣି ଥରେ ସାର୍ବଭୌମ ରାଜ୍ୟ ହୋଇଗଲେ ଆମକୁ ଅନ୍ୟ ପାଖ ପଡ଼ୋଶୀ ସହ ମଧ୍ୟ ଯୁଦ୍ଧ କରିବାକୁ ପଡ଼ିପାରେ । ମୁଁ ଶାନ୍ତିପ୍ରିୟ ଲୋକ । କାହିଁକି ସେଥିରେ ପଶିବି ?" ଶ୍ରୀକେତୁ ଉତ୍ତର ଦିଅନ୍ତି ।

"ମହାରାଜ ! ପରାଧୀନ ହୋଇ ରହିବା ଅପେକ୍ଷା ସ୍ୱାଧୀନ ହେବା ଗୌରବଜନକ କଥା ନୁହେଁ ?" ମନ୍ତ୍ରୀମାନେ କହନ୍ତି ।

"ପରାଧୀନତା କେବଳ ମୋ ପାଇଁ । ପ୍ରଜାମାନେ ତ ମୋର ପ୍ରଜା । ମୋର ଏଇ ପରାଧୀନତା ଘୁଞ୍ଚାଇବା ପାଇଁ ପ୍ରଜାମାନଙ୍କ ପ୍ରଦତ୍ତ ଅର୍ଥ ରାଜକୋଷରୁ ନେଇ ଖର୍ଚ୍ଚ କରିବାକୁ ମୋ ମନ ବଳୁନାହିଁ । ବଦର୍ଭର କରଦରାଜ୍ୟ ହେବାରୁ ମୁକ୍ତି ମିଳିଗଲେ ପ୍ରଜାମାନଙ୍କର କେଉଁ ସୁଖ ବଢ଼ିଯିବ ?" ରାଜା ଉତ୍ତର ଦିଅନ୍ତି ।

ମନ୍ତ୍ରୀ ଓ ମିତ୍ରମାନେ ବୁଝୁଥାନ୍ତି, ରାଜା ଶ୍ରୀକେତୁ ଅତ୍ୟନ୍ତ ଶାନ୍ତିପ୍ରିୟ । ପ୍ରଜାଙ୍କ ସ୍ୱାର୍ଥହିଁ



ତାଙ୍କର ଏକମାତ୍ର ବିଚାରର ବିଷୟ ।

କିଛିଦିନ ପରେ ବିଦର୍ଭ ଦେଶରେ ପଡ଼ିଲା ଦୁର୍ଭିକ୍ଷ । ରାଜ୍ୟରେ ଦେଖାଦେଲା ଅରାଜକତା । ବିଦର୍ଭର ପ୍ରଜାମାନେ ଆଖ ପାଖ ଦେଶ ଭିତରେ ପଶି ଲୁଟ୍‌ତରାଜ କଲେ ।

ହଠାତ୍ ଦିନେ ମନ୍ତ୍ରୀ ଓ ସେନାପତିମାନଙ୍କୁ ଡାକି ରାଜା ଶ୍ରୀକେତୁ କହିଲେ, "ଚବିଶ ଘଣ୍ଟା ଭିତରେ ଯୁଦ୍ଧ ଯାତ୍ରା ସକାଶେ ପ୍ରସ୍ତୁତ ହୁଅ !" ମନ୍ତ୍ରୀ ଓ ସେନାପତିମାନେ ଶ୍ରୀକେତୁଙ୍କଠାରୁ ଏଭଳି ଆଦେଶ ଶୁଣିବେ ବୋଲି କଳ୍ପନା ମଧ୍ୟ କରି ନ ଥିଲେ । ସେମାନେ ବିସ୍ମିତ ହୋଇ ଠିଆ ହୋଇ ରହିଲେ ।

"ମୁହୂର୍ତ୍ତେ ମଧ୍ୟ ସମୟ ନଷ୍ଟ କର ନାହିଁ । ଠିକ୍ ଚବିଶଘଣ୍ଟା ମଧ୍ୟରେ ସବୁ ପ୍ରସ୍ତୁତି ଶେଷ ହେବା ଦରକାର ।" ଶ୍ରୀକେତୁ ଶୁଣାଇଦେଲେ ।

ପରଦିନ ସୂର୍ଯ୍ୟୋଦୟ ପୂର୍ବରୁ ଶ୍ରୀକେତୁ ତାଙ୍କ ସୈନ୍ୟବାହିନୀ ଧରି ବିଦର୍ଭ ଆକ୍ରମଣ କଲେ । ସେଭଳି ପରିସ୍ଥିତି ପାଇଁ ବିଦର୍ଭର ରାଜା ପ୍ରସ୍ତୁତ ନ ଥିଲେ । ପ୍ରଜାମାନଙ୍କର ଅବସ୍ଥା ଥିଲା ଶୋଚନୀୟ । ଶ୍ରୀକେତୁ ଜିତିଗଲେ ।

ସେ ଦେଖିଲେ, ରାଜ୍ୟରେ ପୂର୍ବରୁ ଶସ୍ୟାଗାର ସ୍ଥାପନ କରି ବିପଦ ସମୟ ପାଇଁ କିଛି ସଞ୍ଚିରଖିବାର ବ୍ୟବସ୍ଥା ନାହିଁ କି ମରୁଡ଼ି ବେଳେ ବ୍ୟବହାର ପାଇଁ ଜଳାଶୟ ନାହିଁ । ସେ ସଙ୍ଗେ ସଙ୍ଗେ ଏସବୁ ବ୍ୟବସ୍ଥା କଲେ ।

ବିଦର୍ଭ ତଥା ବିକ୍ରମପୁର ଉଭୟ ରାଜ୍ୟ ଉପରେ ସେ ବହୁକାଳ ଧରି ଆଦର୍ଶ ଶାସନ କରି ଯଶସ୍ୱୀ ହେଲେ ।

ବେତାଳ କାହାଣୀଟି କହିସାରି ଟିକିଏ ଚୁପ୍ ରହି ତା'ପରେ ପ୍ରଶ୍ନ କଲା : ରାଜନ୍ ! ଶ୍ରୀକେତୁଙ୍କ



ବ୍ୟବହାରରୁ ଏଇଆ ପ୍ରମାଣିତ ହେଉ ନାହିଁ କି ସେ ଜଣେ ମିଥ୍ୟାବାଦୀ ? ତାଙ୍କ ଶାନ୍ତିପ୍ରିୟତା ଛଳନା ଛଡ଼ା ଆଉ କ'ଣ ହୋଇପାରେ ? ସେ ଯାହାହେଉ, ଚବିଶ ଘଣ୍ଟା ଭିତରେ ଯୁଦ୍ଧ ଯାତ୍ରା ନ କରି ବିଳମ୍ବ ହୋଇଥିଲେ କ୍ଷତି କ'ଣ ହୋଇଥା'ନ୍ତା ? ପାରିଲେ ଏସବୁ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଜାଣିକରି ଯଦି ନୀରବ ରହିବ ତେବେ ତୁମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନ କରି ରାଜା ବିକ୍ରମାର୍କ ଉତ୍ତର ଦେଲେ : "ଶ୍ରୀକେତୁଙ୍କ ବ୍ୟବହାରରେ କୌଣସି ମିଥ୍ୟାଚାର ବା ଛଳନା ନାହିଁ । ପରାଧୀନତାକୁ ସେ କଦାପି ଗୌରବଜନକ ମଣି ନ ଥିଲେ । କେବଳ ଯୁଦ୍ଧ ଦ୍ୱାରା ନିଜ ପ୍ରଜାଙ୍କ କ୍ଷତି ହେବ ବୋଲି ସେ ଶକ୍ତି ଥିବା ସତ୍ତ୍ୱେ ବିଦର୍ଭ ଆକ୍ରମଣ କରୁ ନ ଥିଲେ । କିନ୍ତୁ ସେ ଯେତେବେଳେ ଦେଖିଲେ ବିଦର୍ଭରେ ଅରାଜକତା ହେତୁ ସେ ରାଜ୍ୟର ଲୋକେ ନିଜ ରାଜ୍ୟରେ ପଶି ଲୁଣ୍ଠତରାଜ କରିବେ ଓ ବିକ୍ରମପୁରର ପ୍ରଜାଙ୍କୁ କଲବଲ କରିବେ, ସେତେବେଳେ ସେ ବିଦର୍ଭ ଆକ୍ରମଣ କଲେ । ବିଦର୍ଭ ଦଖଲ କରି ସେଠାକାରଶାସନ ନିୟନ୍ତ୍ରଣକୁ ଆଣି ନ ଥିଲେ ବିକ୍ରମପୁରରେ ମଧ୍ୟ ଅରାଜକତା ବ୍ୟାପିଥା'ନ୍ତା । ଶ୍ରୀକେତୁ ପ୍ରଜାଙ୍କ ସ୍ୱାର୍ଥ ଆଖିରେ ରଖି ଯେପରି ଯୁଦ୍ଧଯାତ୍ରା କରୁ ନ ଥିଲେ, ସେହିପରି ପ୍ରଜାଙ୍କ ସ୍ୱାର୍ଥ ଦୃଷ୍ଟିରୁହିଁ ଯୁଦ୍ଧଯାତ୍ରା କଲେ ।

"ଚବିଶ ଘଣ୍ଟା ଭିତରେ ଅଭିଯାନ ଆୟୋଜନ କରିବା ସାମରିକ କୌଶଳ ଦୃଷ୍ଟିରୁ ଆବଶ୍ୟକ ଥିଲା । ଅଚାନକ ଆକ୍ରମଣ କରି ନ ଥିଲେ ବିଦର୍ଭର ରାଜା ହୁଏତ ଖବର ପାଇ ସତର୍କ ହୋଇଯାଇଥା'ନ୍ତେ । ନିଜେ ଦୁର୍ବଳ ହୋଇଥିଲେ ବି ଅନ୍ୟ କୌଣସି ରାଜ୍ୟର ଶରଣ ପଶିଥା'ନ୍ତେ । ଶ୍ରୀକେତୁ ସେ ପାଇଁ ତାଙ୍କୁ ସମୟ ଦେଇ ନାହାନ୍ତି ।"

ରାଜାଙ୍କ ମୌନ ଭଙ୍ଗ ହେବା ମାତ୍ରେ ଶବ ସହ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ବୃକ୍ଷ ଡାଳରେ ଝୁଲିପଡ଼ିଲା ।

(କଳ୍ପିତ)



# ଦସ୍ୟୁ ଦମନ

ପ୍ରାଚୀନ କାଳର କଥା । ସିଛିପୁର ରାଜ୍ୟର ସୀମାନ୍ତରେ ଗୋଟିଏ ଅରଣ୍ୟ ଥିଲା । ଗୋଟିଏ ଦୁର୍ଦ୍ଧର୍ଷ ଡାକୁଦଳ ବାରମ୍ବାର ସୀମାନ୍ତର ଗ୍ରାମମାନଙ୍କ ଉପରେ ଚଢ଼ଉ କରୁଥା'ନ୍ତି । ସିପାହିମାନେ ଗୋଡ଼ାଇଲେ ସେମାନେ ବଣ ଭିତରେ ଆତ୍ମଗୋପନ କରୁଥାନ୍ତି ।

ବହୁ ଚେଷ୍ଟା ସତ୍ତ୍ୱେ ଡାକୁଦଳକୁ ଧରି ନ ପାରି ରାଜା ଘୋଷଣା କଲେ : ଯିଏ ଡାକୁ ସର୍ଦ୍ଦାରର ମୁଣ୍ଡ କାଟି ଆଣିବ, ସେ ରାଜକନ୍ୟାକୁ ବିଭା ହେବ ଏବଂ ତାଙ୍କ ଅନ୍ତେ ସିଂହାସନ ପାଇବ ।

ଏ ଘୋଷଣା ଶୁଣିବା ମାତ୍ରେ ଡାକୁସର୍ଦ୍ଦାର ଦେଶ ଛାଡ଼ି ପଳାଇଲା । କାରଣ, ସେ ବୁଝିଥିଲା ଏତେ ବଡ଼ ପ୍ରଲୋଭନ ତା' ଅନୁଚରମାନେ ଏଡ଼ାଇ ପାରିବେ ନାହିଁ । ତା' ମୁଣ୍ଡ କାଟିନେବେ ।

ଡାକୁମାନେ ନୂଆ ସର୍ଦ୍ଦାର ବାଛିବାକୁ ବସିଲେ । କିନ୍ତୁ କେହି ସେ ପଦ ନେବାକୁ ମଙ୍ଗିଲେ ନାହିଁ । ନେତୃତ୍ୱ ଅଭାବରୁ ଦଳ ବଳେ ଭାଙ୍ଗିଗଲା ।





# କାହାର କର୍ମଚାରୀ ?

ରାଜା ପ୍ରଚଣ୍ଡସେନଙ୍କ ରାଜ୍ୟରେ ପ୍ରତ୍ୟେକ ଗ୍ରାମରେ ଦୁଇଜଣ କରି ରାଜକର୍ମଚାରୀ ଗ୍ରାମର ଭଲମନ୍ଦ ଦେଖାଶୁଣା କରିବା ପାଇଁ ନିଯୁକ୍ତ ହୋଇଥା'ନ୍ତି। ସେମାନେ କାଳେ କିଛି ଘୁଷ୍ ନେବେ ବା ଅତ୍ୟାଚାର କରିବେ ବା ଶକ୍ତିର ଅପପ୍ରୟୋଗ କରିବେ, ସେଥିପାଇଁ କେତେ ଜଣ ଅଧିକାରୀ ନିଯୁକ୍ତ ଥା'ନ୍ତି, ସେମାନଙ୍କ ଅଧିକାରରେ କେତେଖଣ୍ଡ ଗ୍ରାମ ଥାଏ।

ଏପରି ଅଧିକାରୀମାନଙ୍କ ଭିତରୁ ଜଣେ ଥିଲେ ରାମଭଦ୍ର। ସେ ଯେଉଁ ଗ୍ରାମ ପରିଦର୍ଶନରେ ଯା'ନ୍ତି ସ୍ତ୍ରୀକୁ ସଙ୍ଗରେ ନେଇ ଯା'ନ୍ତି। ଲୋକମାନେ କହୁଥା'ନ୍ତି କି ରାମଭଦ୍ର ନିଜ ସ୍ତ୍ରୀକୁ ଛାଡ଼ି ଘଡ଼ିଏ ସୁଦ୍ଧା ରହିପାରନ୍ତିନି ଆଉ ସବୁବେଳେ ତାଙ୍କର ନିର୍ଦ୍ଦେଶ ମାନି ଚଳନ୍ତି।

ରାମଭଦ୍ରଙ୍କ ପତ୍ନୀଙ୍କ ମନରେ ଏହି ଅହଙ୍କାର ଥାଏ ଯେ ସେ ଜଣେ ବଡ଼ ଅଧିକାରୀଙ୍କ ପତ୍ନୀ। ସେ ଯୁଆଡ଼େ ଯା'ନ୍ତି ରାଜକର୍ମଚାରୀଙ୍କ ଉପରେ ନିଜ ସ୍ୱାମୀଙ୍କ ଅପେକ୍ଷା ବେଶୀ ପ୍ରତାପ ଦେଖାନ୍ତି। ଲୋକମାନେ ତାଙ୍କର ଅତ୍ୟାଚାର ସହିଯା'ନ୍ତି କାରଣ ତାଙ୍କର ବିରୋଧ କରିବା ମାନେ ରାମଭଦ୍ରଙ୍କର ବିରୋଧ କରିବା।

ସେହି ସମୟରେ କୃଷ୍ଣାପୁର ଗ୍ରାମରେ ହରି ଓ ଗିରି ନାମକ ଦୁଇଜଣ ରାଜକର୍ମଚାରୀ ଥିଲେ। ସେ ଦୁଇଜଣ ଗୋଟିଏ ଘରର ଦୁଇ ପାଖରେ ରହୁଥା'ନ୍ତି। ଥରେ ରାମଭଦ୍ର ପତ୍ନୀକୁ ନେଇ କୃଷ୍ଣାପୁର ଗଲେ ଓ ସେହିମାନଙ୍କ ଘରେ ରହିଲେ।

ହରି ଓ ଗିରି ଖୁବ୍ ଭଦ୍ର ଓ ଧନୀ ଥିଲେ। ସମସ୍ତେ ସେ ଦୁହିଁଙ୍କ ବ୍ୟବହାରରେ ମୁଗ୍ଧ ହୋଇଥା'ନ୍ତି। ତେଣୁ ରାମଭଦ୍ରଙ୍କ ଦ୍ୱାରା ସେ-

ମାନଙ୍କର କୌଣସି କ୍ଷତି ହେବାର ସମ୍ଭାବନା ନ ଥାଏ । ଦୁହେଁ ରାମଭଦ୍ର ଓ ତାଙ୍କ ପତ୍ନୀଙ୍କର ରହିବାର ସବୁ ସୁବିଧା କରି ଦେଇ ରାମଭଦ୍ରଙ୍କୁ ନେଇ ଗାଁ ବୁଲିଗଲେ ।

ଏଣେ ରାମଭଦ୍ରଙ୍କ ପତ୍ନୀ ହରି ଓ ଗିରିଙ୍କ ସ୍ତ୍ରୀମାନଙ୍କ ଉପରେ ନିଜର କ୍ଷମତା ଜାହିର କଲେ । ଅଧିକାରୀଙ୍କ ପତ୍ନୀଙ୍କର ସାରା ଦିନ ସେବା କରି ଯେତେବେଳେ ଗିରି ସ୍ତ୍ରୀ ଟିକେ ଥକିଯାଇ ଚୌକି ଉପରେ ବସି ପଡ଼ିଲା, ରାମଭଦ୍ରଙ୍କ ସ୍ତ୍ରୀ କହିଲେ "ତୁମେ ଜଣେ ଶ୍ରେଷ୍ଠ କର୍ମଚାରୀଙ୍କ ସ୍ତ୍ରୀ ମୋର ସମକକ୍ଷ ହୋଇ ମୋ ସାମନାରେ ଚୌକିରେ ବସିବ ? ଉଠିପଡ଼ !"

ଏପରି ଅଯଥା କଥା ଗିରିର ସ୍ତ୍ରୀକୁ ବଡ଼ ଖରାପ ଲାଗିଲା । ସେ କହିଲା, "ବସିଲି ତ କ'ଣ ହେଲା ? ତୁମଠୁ ମୁଁ ତ କେଉଁ ଗୁଣରେ ଶ୍ରେଷ୍ଠ ନୁହେଁ । ତା'ଛଡ଼ା ଘର ତ ଆମର ।"

"ଏ ଘର ତୁମର ହୋଇପାରେ, କିନ୍ତୁ ମନେରଖ ତୁମ୍ ସ୍ୱାମୀଙ୍କ ଅଧିକାରୀ ହେଲେ ମୋର ସ୍ୱାମୀ ।" ରାମଭଦ୍ରଙ୍କ ପତ୍ନୀ ବଡ଼ପଣ ଦେଖେଇ କହିଲେ ।

କଥା ଶୁଣି ହରିର ସ୍ତ୍ରୀ ମଧ୍ୟ ରାଗିଯାଇ କହିଲା, "ତୁମ ସ୍ୱାମୀ ଆମ ସ୍ୱାମୀଙ୍କର ଅଧିକାରୀ ହୋଇ ପାରନ୍ତି, କିନ୍ତୁ ତୁମେ ତ ଆମର ଅଧିକାରିଣୀ ନୁହଁ । ଏକଥା ମନେରଖି ବ୍ୟବହାର କରିବା ଉଚିତ ନୁହେଁ କି ?"

ରାମଭଦ୍ରଙ୍କ ସ୍ତ୍ରୀ କ'ଣ ଉତ୍ତର ଦେବେ ଭାବି-



ପାରିଲେ ନାହିଁ; ତେଣୁ ଚୁପ୍ ରହିଲେ ଏବଂ ସ୍ୱାମୀ ଘରକୁ ଆସିଲା ପରେ ଯାହା ଯାହା ଘଟିଛି ସେଥିରେ କିଛି ଲଗେଇ ଯୁଟେଇ ମନକୁ ଫାନ୍ଦି ଅନେକ କିଛି କହିଲେ । ରାମଭଦ୍ର କ୍ରୋଧରେ ପାଗଳ ହୋଇ ହରି ଓ ଗିରିଙ୍କୁ ଏହାର କୈଫିୟତ ମାଗିଲେ । ସେମାନେ ଦୁଇଜଣ ନିଜ ନିଜର ସ୍ତ୍ରୀମାନଙ୍କଠାରୁ ସବୁକଥା ଶୁଣିସାରିଥିଲେ । ତେଣୁ ରାମଭଦ୍ରଙ୍କୁ କହିଲେ, "ଏଥିରେ ଆମ ସ୍ତ୍ରୀଙ୍କର କୌଣସି ଭୁଲ ନାହିଁ । ଆପଣ ଆମ ଉପରେ ହୁକୁମ କରି ପାରନ୍ତି, କିନ୍ତୁ ଆପଣଙ୍କ ସ୍ତ୍ରୀ ଆମ ସ୍ତ୍ରୀମାନଙ୍କ ପ୍ରତି ଏପରି ବ୍ୟବହାର କରିବା ଠିକ୍ ନୁହେଁ ।"

କଥା ଶୁଣି ରାମଭଦ୍ର ରାଗିଯାଇ କହିଲେ, "ମୋ ସ୍ତ୍ରୀ ତୁମ ସ୍ତ୍ରୀମାନଙ୍କର ଅଧିକାରିଣୀ ହୋଇ ନ ପାରନ୍ତି, କିନ୍ତୁ ସେ ମୋର ଅଧିକାରିଣୀ । ତେଣୁ ତାଙ୍କ ନିର୍ଦ୍ଦେଶ ଅନୁସାରେ ତୁମ ଦୁହିଁଙ୍କୁ ବରଖାସ୍ତ କରିଦେଲି ।" ହରି ଓ ଗିରି ରାମଭଦ୍ରଙ୍କୁ ବହୁତ ବୁଝାଇଲେ; କିନ୍ତୁ ଫଳ କିଛି ହେଲା ନାହିଁ ।

ରାମଭଦ୍ର ଚାଲିଯିବା ପରେ ଗ୍ରାମବାସୀମାନେ ଜଣେ ଭଦ୍ରଲୋକଙ୍କୁ ସବୁକଥା ବୁଝାଇ କହିବା ପାଇଁ ରାଜାଙ୍କ ପାଖକୁ ପଠାଇଲେ । ରାଜା ମଧ୍ୟ ଗୁପ୍ତଚର ଦ୍ୱାରା ସତ୍ୟଘଟଣା ଜାଣିଗଲେ ।

ଏହାପରେ ମାସିକ ଦରମା ରାମଭଦ୍ରଙ୍କୁ ମିଳିଲା ନାହିଁ । ସେ ବ୍ୟସ୍ତ ହୋଇ କୋଷାଧ୍ୟକ୍ଷଙ୍କ ନିକଟରେ ଯାଇ ପହଞ୍ଚିଲେ । ସେ କହିଲେ, "ଭାଇ, ଏସବୁ ବିଷୟ ମୋର ସମ୍ପୂର୍ଣ୍ଣ ଅଗୋଚର । ଆପଣଙ୍କର ଯାହା ପଚାରିବାର ସିଧା ରାଜାଙ୍କୁ ପଚାରନ୍ତୁ ।"

ରାମଭଦ୍ର ରାଜାଙ୍କୁ ଦର୍ଶନ କରି ନିଜ ଦରମା ବନ୍ଦ କଥା ଶୁଣାଇଲେ । ରାଜା ତାଙ୍କୁ ସ୍ପଷ୍ଟ କହିଦେଲେ, "ମୋ ଧାରଣା ଥିଲା ତୁମେ ଆଜି ପର୍ଯ୍ୟନ୍ତ ମୋ ଅଧୀନରେ କାମ କରୁଛ ବୋଲି । କିନ୍ତୁ ମୁଁ ଜାଣିପାରିଲି ଯେ ତୁମର ଅଧିକାରିଣୀ ତୁମର ପତ୍ନୀ । ତେଣୁ ନିଜ ଦରମା ଏଣିକି ତୁମ ପତ୍ନୀଙ୍କ ପାଖରୁ ନେଇନେବ ଯାଅ ।"

ରାମଭଦ୍ରଙ୍କର ଚାକିରି ଚାଲିଗଲା । କିନ୍ତୁ ହରି ଓ ଗିରି ସେମାନଙ୍କ ଚାକିରି ଫେରିପାଇଲେ ।





# ନକଲି ହାର

ଗୋଟିଏ ଗ୍ରାମରେ ରାମ ଅବଧାନ ନାମରେ ଜଣେ ପଣ୍ଡିତ ଥିଲେ । ଅବଧାନ କରି ପିଲାଙ୍କୁ ପଢ଼ାଇ ଯାହା କିଛି ଟଙ୍କା ପା'ନ୍ତି ସେଥିରେ କଷ୍ଟେ ମଷ୍ଟେ ପରିବାର ଚଳାନ୍ତି ।

ଦିନେ ତାଙ୍କ ସ୍ତ୍ରୀ ମୀନାକ୍ଷୀ ବାପ ଘରକୁ ବୁଲିଯିବାକୁ ମନ ବଳାଇଲେ ଓ ସ୍ୱାମୀଙ୍କୁ ସେ କଥା କହିଲେ । ପଣ୍ଡିତ କହିଲେ, "ତୁମେ ଯାଅ, ମୋର ଚଳାଚଳରେ ଟିକିଏ ଅସୁବିଧା ହେବ ଓ ପଇସା ଖର୍ଚ୍ଚ ଟିକିକ ବେଶୀ ହେବ ।"

"ଠିକ୍ ଅଛି । କିନ୍ତୁ ମୋର ବିବାହ ପରେ ଗୋଟିଏ ବି ଗହଣା କରି ଦେଇ ନାହିଁ । ମୁଁ ମୋ ବାପ ଘରେ ପୁରୁଣା ଗହଣା ନେଇ କିପରି ମୁହଁ ଦେଖାଇବି । ନିହାତି କମ୍‌ରେ ନୂଆ ହାରଟିଏ ତ ଗଢ଼େଇ ଦେବ ।" ମୀନାକ୍ଷୀ କହିଲେ ।

"ମୀନାକ୍ଷୀ, ତୁମେ ମୋ ଅବସ୍ଥା ଜାଣ । ଯାହା ଟଙ୍କା ଏଇଥିରୁ ମିଳେ କୌଣସିମତେ ସେଥିରେ ଘର ଚଳେ । ଆଉ ଅଧିକ ଟଙ୍କା ବା କେଉଁଠୁ ଆଣିବି ହାର ପାଇଁ ?" ପଣ୍ଡିତ କହିଲେ ।

"ଦେଖ ମୋ ମା' ଦେଇଥିବା ଦି'ଟି ରୁପା ଖଣ୍ଡୁ ଘରେ ଅଛି । ତାକୁ ବଦଳାଇ କିଛି ଟଙ୍କା ପକାଇ ହାରଟିଏ କରିଦେଲେ ହୁଅନ୍ତାନି ?" ମୀନାକ୍ଷୀ କହିଲେ ।

ପରଦିନ ପଣ୍ଡିତ ସହରକୁ ଯାଇ ବଣିଆ ଦୋକାନରେ ପହଞ୍ଚି ରୁପାଖଣ୍ଡୁ ବଦଳାଇ ହାରଟିଏ ଦେବାକୁ ଦୋକାନୀକୁ କହିଲେ । ଦୋକାନୀ କହିଲା—ରୁପାଖଣ୍ଡୁ ବଦଳରେ ଖାଣ୍ଟିସୁନା ହାର ମିଳି ପାରିବ ନାହିଁ । ନିହାତି ଦରକାର ତ ନକଲି ସୁନାର ହାରଟିଏ ନିଅନ୍ତୁ ।

ସୁନାର ବେଶୀ ଦାମ୍ ହେତୁ ସୁନାପାଣି ଦିଆ ଅଳଙ୍କାର ବେଶୀ ବିକ୍ରି ହେଉଛି । ରଙ୍ଗ ମଧ୍ୟ କେବେ ଖରାପ ହେବ ନାହିଁ । ଟଙ୍କା ବି ଅବଶିଷ୍ଟ କିଛି ରହିବ ।"

ଦେକାନୀ ଯେଉଁ ହାରଟି ଦେଲା ସେଇଟି ଥିଲା ଅତି ସୁନ୍ଦର । ପଣ୍ଡିତ ହାରଟି ନେଇଯାଇ ସ୍ତ୍ରୀକୁ ଦେଲେ ଓ ସବୁକଥା ବୁଝାଇ କହିଲେ, "ଏବର୍ଷ ଏ ହାରଟି ତୁମେ ପିନ୍ଧି ଯାଅ । ଆସନ୍ତା ବର୍ଷକୁ ଯେବେ ବାପ ଘରକୁ ଯିବ ମୁଁ ଟଙ୍କା ଏକାଠି କରି ଗୋଟିଏ ଖାଣ୍ଟିସୁନାର ହାର କରାଇ ଦେବି ।"

ମୀନାକ୍ଷୀ ପଣ୍ଡିତଙ୍କୁ କହିଲେ, "ମୁଁ କିନ୍ତୁ ସମସ୍ତଙ୍କୁ କହିବି ଖାଣ୍ଟିସୁନା ବୋଲି ।"

ମୀନାକ୍ଷୀ ବାପଘର ଗଲେ । ଏତେ ଦିନ ପରେ ବାପ ଘରକୁ ଆସିଛନ୍ତି ବୋଲି ତାଙ୍କ ଭାଇ ମାଧବ, ଭାଉଜ ରୁକ୍ମଣୀ ତାଙ୍କୁ ବହୁତ ଆଦର ଯତ୍ନ କଲେ । ରୁକ୍ମଣୀ ନଣନ୍ଦଙ୍କ ବେକରେ ନୂଆ ଚକଚକିଆ ହାରଟି ଦେଖି ପଚାରିଲେ, "ମୀନାକ୍ଷୀ ତୁମେ ଏ ହାର କେବେ ଗଢ଼ାଇଲ ?"

"ଭାଉଜ ଏଇଟି ଏବେ ଗଢ଼ାଇଛି । ମୋ ସ୍ୱାମୀଙ୍କ ନିକଟରେ ଜଣେ ଜମିଦାରଙ୍କ ପୁଅ ପାଠ ପଢ଼ୁଥିଲା । ସେ ପାଠ ସମାପ୍ତ କରି ଯିବା ବେଳେ ଗୁରୁ ଦକ୍ଷିଣା ଯାହା ଦେଇଗଲା ସେଥିରେ ହାରଟି ହୋଇଛି । ମୁଁ ଯେତେ କହିଲି ହାର ଦରକାର ନାହିଁ ମୋ କଥା ଶୁଣୁଛି କିଏ ?" ଏତକ ମୀନାକ୍ଷୀ ମନରୁ ଫାନ୍ଦି କହି-



ଦେଲେ । ହାରଟି ଦେଖିଲା ବେଳଠୁ ରୁକ୍ମଣୀଙ୍କ ମନରେ ପ୍ରଶ୍ନ ଉଠିଲା, "ଆହା ମୋର ହେଲେ ଏମିତି ହାରଟିଏ ହୁଅନ୍ତା ।" ସେଇଦିନ ରାତିରେ ସେ ସ୍ୱାମୀକୁ ସେକଥା କହିଲା ।

ମାଧବ ସେମିତି ବେଶୀ ପଢ଼ାପଢ଼ି କରି ନ ଥିଲେ । ବାପା ଅଜା ଅମଳରୁ ଥିବା ଜମିବାଡ଼ ବୁଝାଶୁଝା କରି ସେଇଥିରୁ ଯାହା ମିଳୁଥିଲା ସେଥିରେ ମାଧବ ଘର ଚଳାଉଥିଲେ । ମାଧବ ସବୁକଥା ବୁଝାଇବା ପରେ କହିଲେ, "ଆଚ୍ଛା, ତୁମେ ଚିନ୍ତା କର ନାହିଁ, ଧାନ କିଛି ବିକିକରି କାଲି ଟଙ୍କା ନେଇ ସହରକୁ ଯାଇ ତୁମ ପାଇଁ ହାରଟିଏ ଆଣିଦେବି ।"

ମାଧବ କିଛି ଟଙ୍କା ନେଇ ସହରର ଅଳଙ୍କାର ଦୋକାନରେ ପହଞ୍ଚି ହାର ସବୁର ମୂଲ୍ୟ ବୁଝିବାରୁ ଜଣାଗଲା ଯେ ଗୋଟିଏ ଖାଣ୍ଟି-ସୁନାର ହାରର ଦାମ ତା'ର ବର୍ଷକର ଘର ଖର୍ଚ୍ଚ ସଙ୍ଗେ ପ୍ରାୟ ସମାନ ! ସିଏ ବହୁତ ନିରାଶ ହୋଇଯିବାରୁ ଦୋକାନୀ କହିଲା, "ଦେଖ ଭାଇ, ନକଲି ସୁନାର ହାର ସବୁ ଅଛି, ଶସ୍ତାରେ ମିଳିବ । ଦେଖିବ କି ?"

ତା'ପରେ ଦୋକାନୀ ବହୁ ନକଲି ସୁନାର ହାର ଦେଖାଇଲା । ମାଧବ ଏସବୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସେଥିରୁ ଗୋଟିଏ ହାର ମୀନାକ୍ଷୀର ହାର ପରି ହୋଇଥିଲା । ତେଣୁ ମାଧବ କୌଣସି କଥାବାର୍ତ୍ତା ନ କରି ହାରଟି କିଣି ଆଣିଲେ । ସେ ଭାବୁଥିଲେ



କେବଳ ମୀନାକ୍ଷୀର ହାରଟି ଖାଣ୍ଟିସୁନାର । ହାରଟି ଦେଖି ରୁକ୍ମଣୀ ଖୁବ୍ ଖୁସୀ ହେଲେ । ମାଧବ କହିଲେ ଯେ ଏହା ଖାଣ୍ଟିସୁନାର ନୁହେଁ । କିନ୍ତୁ ଆସନ୍ତା ବର୍ଷ ଯେପରି ହେଉ ସେ ଗୋଟିଏ ଖାଣ୍ଟିସୁନାର ହାର କିଣି ଦେବେ । ରୁକ୍ମଣୀ ସନ୍ତୁଷ୍ଟ ଥିଲେ କାରଣ ହାରଟି ଏକବାରେ ମୀନାକ୍ଷୀର ହାର ପରି ଥିଲା । ତା'ପରେ ନକଲି ଅସଲି କିଏ ବା ଜାଣୁଛି ।

ମୀନାକ୍ଷୀ ମଧ୍ୟ ରୁକ୍ମଣୀଙ୍କ ହାର ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ଅଧିକନ୍ତୁ ତାହା ଖାଣ୍ଟି-ସୁନାର ହାର ବୋଲି ଭାବି ମନରେ ବହୁତ ଈର୍ଷା ହେଲା । ଦୁହିଁଙ୍କର ପରସ୍ପର ପ୍ରତି ଏତେ ଈର୍ଷା ହେଲା ଯେ ରାତିରେ ନିଦ ହେଲା ନାହିଁ ।

ରାତି ପାହିଲା । ସେ ଦିନ ଥିଲା ଉତ୍ସବର ଦିନ । ରୁକ୍ମଣୀ ସକାଳୁ ଉଠି ସବୁ ପିଲାଙ୍କୁ ଗାଧୋଇଦେଇ ନୂଆ ଲୁଗା ପିନ୍ଧାଇ ନିଜେ ଗାଧୋଇ ଗଲେ । ସୁବିଧା ଦେଖି ମୀନାକ୍ଷୀ ନିଜ ହାରଟି ସେ ହାରଟି ସହିତ ବଦଳାଇ-ଦେଲେ ।

ଠିକ୍ ସେହିପରି ମୀନାକ୍ଷୀ ମଧ୍ୟ ଗାଧୋଇ ଗଲାବେଳେ ରୁକ୍ମଣୀ ତାଙ୍କ ହାରଟି ସୁବିଧା ଦେଖି ମୀନାକ୍ଷୀଙ୍କ ହାର ସହିତ ବଦଳାଇ-ଦେଲେ । ଏପରି ଭାବରେ ଦୁଇ ଥର ବଦଳା ହେବା ହାର ଦୁହିଁଙ୍କର ହାର ନିଜ ନିଜ ନିକଟକୁ ଚାଲି ଆସିଲା । ଦୁହେଁ କିନ୍ତୁ ଖୁବ୍ ଖୁସୀ ଥିଲେ ଯେ ଖାଣ୍ଟିସୁନାର ହାର ତାଙ୍କର ନିକଟରେ ଅଛି ।

ପରବର୍ତ୍ତୀ ବର୍ଷ ରୁକ୍ମଣୀ ଖାଣ୍ଟିସୁନାର ହାର ପାଇଁ ଆଉ ସ୍ୱାମୀ ସହିତ ଜିଦ୍ କଲେ ନାହିଁ, ସେ କଥା ମନେ ବି କଲେ ନାହିଁ । କାରଣ ସେ ମନ ଭିତରେ ଖୁସୀ ଥିଲେ ।

ଏଣେ ପଣ୍ଡିତ ମଧ୍ୟ ବର୍ଷସାରା ଡରକରି ଥା'ନ୍ତି କେବେ ତାଙ୍କୁ ହାର ଗଢ଼ାଇବାକୁ ପଡ଼ିବ । କିନ୍ତୁ ମୀନାକ୍ଷୀଙ୍କର ମନେ ନ ପଡ଼ିବା ଦେଖି ସେ ବହୁତ ଆଶ୍ଚର୍ଯ୍ୟ ହେଲେ ।





# ଅଦ୍ଭୁତ ବିଜୟ

ପ୍ରାଚୀନ କାଳର କଥା । ବିଦର୍ଭ ରାଜ୍ୟ ଶାସନ କରୁଥିଲେ ରାଜା ବିଜୟପାଳ । ସେ ଥିଲେ ମହାନ୍ ଯୋଦ୍ଧା । ତାଙ୍କ ସହ ଯୁଦ୍ଧ କରି ପରାଜୟ ଲଭି ନ ଥିବା ରାଜା ଦେଶରେ ନ ଥିଲେ । ତାଙ୍କ ଗୌରବ ଗାନ କରି କେତେ ଗୀତ ଲେଖା ହୋଇଥାଏ ।

ରାଜା ବିଜୟପାଳଙ୍କର ପୁତ୍ର ସନ୍ତାନ ନ ଥିଲେ । ଏକମାତ୍ର ସନ୍ତାନ ଶାନ୍ତା ଥିଲେ ସୁନ୍ଦରୀ ଯୁବତୀ । ପ୍ରଜାଙ୍କ ଇଚ୍ଛା ଥିଲା, ତାଙ୍କର ଭଳି ପରାକ୍ରମୀ କୌଣସି ରାଜପୁତ୍ର ସହିତ ଶାନ୍ତାଙ୍କ ବିବାହ ହେବ । କିନ୍ତୁ ତାଙ୍କ ଭଳି ପରାକ୍ରମୀ କିଏ ? ସେଭଳି କେହି ଆଖିରେ ପଡ଼ୁ ନ ଥିଲେ । ତେଣୁ ବିବାହ ହୋଇପାରୁ ନ ଥିଲା । କେହି କେହି ରାଜା ବିଦର୍ଭ ଆକ୍ରମଣ କରି ରାଜାଙ୍କୁ ପରାସ୍ତ କରି ଶାନ୍ତାକୁ ବିବାହ କରିବାର ସ୍ୱପ୍ନ ଦେଖୁଥିଲେ । କିନ୍ତୁ ସେ ସ୍ୱପ୍ନ ସ୍ୱପ୍ନରେହିଁ ରହୁଥିଲା ।

କିନ୍ତୁ ଜୟପୁରର ଯୁବରାଜ ବିକ୍ରମ ଦିନେ ନା ଦିନେ ବିଦର୍ଭ ଆକ୍ରମଣ କରିବାକୁ ଦୃଢ଼ ନିଶ୍ଚୟ କରିଥିଲେ । ତାଙ୍କ ପିତା ବିଜୟପାଳଙ୍କ ହାତରେ ପରାଜୟ ଲଭିଥିଲେ । ସେ ଅପମାନର ବଦଳା ନେବା ପାଇଁ ସେ ପିଲାକାଳରୁ ଗଭୀର ମନଯୋଗ ସହକାରେ ଯୁଦ୍ଧବିଦ୍ୟା ଶିଖୁଥିଲେ । ନିଜ ସୈନ୍ୟବାହିନୀକୁ ମଧ୍ୟ କଠୋର ନିୟମ କାନୁନ୍ ଦ୍ୱାରା ଦୁର୍ଦ୍ଧର୍ଷ କରି ତୋଳିଥିଲେ ।

ଯଥା ସମ୍ଭବ ପ୍ରସ୍ତୁତ ହୋଇ ବିକ୍ରମ ବିଦର୍ଭ ଆକ୍ରମଣ କଲେ । ସେତେବେଳେ ରାଜା ବିଜୟ-ପାଳ ଅସୁସ୍ଥ ଥା'ନ୍ତି । ରାଜବୈଦ୍ୟଙ୍କ ଚିକିତ୍ସା କାଟୁ କରୁ ନ ଥାଏ ।

ଅସୁସ୍ଥ ଅବସ୍ଥାରେ ରାଜ୍ୟ ପ୍ରତି ବିପଦ ପଡ଼-

(ପଚାଶ ବର୍ଷ ତଳର 'ଚନ୍ଦାମାମା'ରୁ ଆହୃତ)



ବାର ଶୁଣି ରାଜାଙ୍କ ଅସୁସ୍ଥତା ବଢ଼ିଗଲା । ତଥାପି ସେ ନିଜେ ଯୁଦ୍ଧକ୍ଷେତ୍ରକୁ ଯିବାକୁ ବାହାରିଲେ । ସେଥିରେ ମନ୍ତ୍ରୀ ଓ ରାଜବୈଦ୍ୟ ବାଧା ଦେଲେ । ଯୁଦ୍ଧକ୍ଷେତ୍ରକୁ ଯାଇ ନ ପାରି ରାଜାଙ୍କ ମନ ବିକଳ ହେଲା । ସେ ଆହୁରି ଅସୁସ୍ଥ ହେଲେ ।

ରୋଗ ଶଯ୍ୟାରେ ପଡ଼ିରହି ସେ ନିଜ ସୈନ୍ୟବାହିନୀ କିପରି ବ୍ୟୂହ ରଚନା କରି ଶତ୍ରୁକୁ ସାମନା କରିବା ଉଚିତ, ତାର ନକ୍ସାମାନ ତିଆରି କରି ଦେଉଥାନ୍ତି । କିନ୍ତୁ ସେ କୌଶଳ ସଫଳ ନ ହେବାର ସମ୍ବାଦରେ ସେ ଭାଙ୍ଗି ପଡୁଥା'ନ୍ତି ।

ଦେଖାଗଲା, ବିକ୍ରମଙ୍କ ଜୟ ଅନିବାର୍ଯ୍ୟ । ଏଣେ ରାଜା ବିଜୟପାଳଙ୍କ ଅବସ୍ଥା ଶୋଚନୀୟ । ମନ୍ତ୍ରୀ ଭାବିଲେ, ରାଜାଙ୍କୁ ଯୁଦ୍ଧର ପ୍ରକୃତ ଅବସ୍ଥା ଜଣାଇ ତାଙ୍କୁ ବ୍ୟଥା ଦେଇ ଲାଭ ନାହିଁ । ରାଜବୈଦ୍ୟ ମଧ୍ୟ ମନ୍ତ୍ରୀଙ୍କୁ ଜଣାଇଲେ କି ରାଜା ଖୁବ୍ ବେଶୀ ହେଲେ ଦୁଇ ଦିନ ବଞ୍ଚିବେ ।

ରାଜା ଦାରୁଣ ଦୁଃଖରେ କାନ୍ଦିକି ମରିବେ—ଏହା ଭାବି ମନ୍ତ୍ରୀ ତାଙ୍କୁ ତେଣିକି ବିଦର୍ଭ ସୈନ୍ୟବାହିନୀ ଧୀରେ ଧୀରେ ଜୟଲାଭ ଦିଗରେ ଅଗ୍ରସର ହେଉଛନ୍ତି ବୋଲି କହିବାକୁ ଲାଗିଲେ ।

ଫଳ ହେଲା, ରାଜାଙ୍କ ମୁଖରେ ପ୍ରସନ୍ନତା ଫୁଟି ଉଠିଲା । ସେ ଶାନ୍ତିରେ ଶୋଇ ପାରିଲେ । ତାଙ୍କ ଅବସ୍ଥାରେ ସାମାନ୍ୟ ଉନ୍ନତି ଦେଖାଗଲା ।

ଦୁଇ ଦିନ ବିତିଗଲା । ଯୁଦ୍ଧ କ୍ଷେତ୍ରରେ ବିକ୍ରମ ବିଦର୍ଭସେନାକୁ ପୂରା ପରାସ୍ତ କରିବାକୁ ଆଉ ଅଧିକ ବିଳମ୍ବ ନ ଥାଏ । ରାଜା ମନ୍ତ୍ରୀଙ୍କୁ କ୍ଷୀଣ ସ୍ୱରରେ ପଚାରିଲେ, "ଯୁଦ୍ଧର ଖବର କ'ଣ ?"

"ମହାରାଜ ! ଆମ ବିଜୟ ଆସନ୍ନ ପ୍ରାୟ । ଶତ୍ରୁପକ୍ଷ ଭାଙ୍ଗିପଡ଼ିଲେଣି !" ମନ୍ତ୍ରୀ ଉତ୍ତର ଦେଲେ । ରାଜାଙ୍କ ମୃତ୍ୟୁ ଯେତେବେଳେ ଅନିବାର୍ଯ୍ୟ, ସେ ଶାନ୍ତିରେ ମରନ୍ତୁ । ତାଙ୍କ ଅନ୍ତେ ବରଂ ନଅର ବିକ୍ରମଙ୍କ ହାତରେ ପଡ଼ୁ । ଏହାହିଁ

ଥିଲା ମନ୍ତ୍ରୀଙ୍କର ଏକମାତ୍ର ଚିନ୍ତା ।

ସେତିକିବେଳେ ବିଦର୍ଭ ସୈନ୍ୟବାହିନୀ ପୂରାପୂରି ପରାସ୍ତ ହେଲେ । ଜୟପୁର ସୈନ୍ୟମାନେ ମାଡ଼ି ଆସି ନଅର ସିଂହଦ୍ୱାରରେ ପହଞ୍ଚିଲେ ।



"ମନ୍ତ୍ରୀ ! ଏ କୋଳାହଳ କ'ଣ ପାଇଁ ?" ରୋଗ ଶଯ୍ୟାରେ ରାଜା ପଚାରିଲେ ।

"ମହାରାଜ ! ବିଜୟ ଲାଭ ଉତ୍ତାରୁ ଆମ ସୈନ୍ୟମାନେ ଫେରି ଆସି ନଅରଦ୍ୱାରରେ ଆନନ୍ଦ ଧ୍ୱନି କରୁଛନ୍ତି ।" ମନ୍ତ୍ରୀ କହିଲେ ।

"ମୁଁ ଜାଣିଥିଲି । ମୁଁ ଜୀବିତ ଥିବା ଯାଏ ଆମ ରାଜ୍ୟର ପରାଜୟ ନାହିଁ !" ରାଜା ମୃଦୁ ହସ ଖେଳାଇ କହିଲେ ।

ଅଳ୍ପ ସମୟ ପରେ ବିଜୟୀ ବିକ୍ରମ ବିଦର୍ଭ ଦରବାର ଭିତରକୁ ପଶି ଆସି ବିଦର୍ଭର ମନ୍ତ୍ରୀ ଓ ସେନାପତିମାନଙ୍କୁ ତଲବ୍ କଲେ । ସେମାନେ ନତମସ୍ତକରେ ଆସି ପରାଜୟ ସ୍ୱୀକାର କଲେ ଓ ସନ୍ଧି ଭିକ୍ଷା କଲେ । ସନ୍ଧି ପତ୍ରରେ ରାଜା ବିଜୟପାଳଙ୍କ ଦସ୍ତଖତ ରହିବା ଦରକାର । ମନ୍ତ୍ରୀ ଯାଇ ରାଜାଙ୍କ ଅଙ୍ଗୁଳିରୁ ଦସ୍ତଖତ-ସମ୍ବଳିତ ମୁଦ୍ରି-କାଟି ବାହାର କରିବାକୁ ଚେଷ୍ଟା କଲେ ।

"କ'ଣ କରୁଛ ମନ୍ତ୍ରୀ ?" ରାଜା ପଚାରିଲେ ।

"ମହାରାଜ ! ଶତ୍ରୁ ପରାଜିତ ଓ ସନ୍ଧି ପ୍ରାର୍ଥୀ । ସନ୍ଧି ପତ୍ରରେ ଆପଣଙ୍କ ଦସ୍ତଖତ ଲୋଡ଼ା ।" ମନ୍ତ୍ରୀ ଉତ୍ତର ଦେଲେ ।

ରାଜା ଏତେ ଖୁସୀ ହେଲେ ଯେ ସେ ଉଠି ବସିବାକୁ ଚେଷ୍ଟା କରି କହିଲେ, "ଚାଲ, ମୁଁ ନିଜେ ଦରବାରକୁ ଯାଇ ବନ୍ଦୀ ବିକ୍ରମକୁ ଭେଟିବି ।"

ମନ୍ତ୍ରୀଙ୍କର ମନେ ହେଲା ଯେପରିକି ସେ ପାଗଳ ହୋଇଯିବେ । ବର୍ତ୍ତମାନ ଉପାୟ କ'ଣ ?

"ଯେ ଆଜ୍ଞା, ମହାରାଜ । ମୁଁ ବ୍ୟବସ୍ଥା କରୁଛି !" କହି ସେ ଦରବାର ଭିତରକୁ ଦୌଡ଼ିଗଲେ । ସେତେବେଳକୁ ବିକ୍ରମ ସିଂହା-ସନ ଦଖଲ କରି ବସିଥାନ୍ତି ଓ ସନ୍ଧିର ସର୍ତ୍ତ ଡାକ ଦେଉଥାନ୍ତି ।

ମନ୍ତ୍ରୀ ଯାଇ କାତର କଣ୍ଠରେ ତାଙ୍କୁ ସବୁ ଶୁଣାଇଲେ ଓ ନିବେଦନ କଲେ, "ହେ ବିଜୟୀ! ଆମ ରାଜା ଦିନେ ଅଧେରୁ ବେଶୀ ବଞ୍ଚିବେ ନାହିଁ । ଆପଣ ଆପଣଙ୍କ ବୀରତ୍ୱ ସାବ୍ୟସ୍ତ କରିଛନ୍ତି । ଯଦି ଅନୁଗ୍ରହ କରି ମୃତ୍ୟୁପଥଗାମୀ ରାଜାଙ୍କ ଆଗରେ ପରାଜିତ ହୋଇଥିବାର ଅଭିନୟ କରିବେ, ତେବେ ଆପଣଙ୍କ ମହତ୍ତ୍ୱ ଓ ମାନବିକତା ସାବ୍ୟସ୍ତ ହେବ ।"

ବିକ୍ରମ ଅତ୍ୟନ୍ତ ଅଡୁଆରେ ପଡ଼ିଲେ । କିନ୍ତୁ ମନ୍ତ୍ରୀଙ୍କ ପ୍ରଭୁଭକ୍ତିକୁ ତାରିଫ୍ କରି ସେ ତାଙ୍କ ପ୍ରସ୍ତାବରେ ସମ୍ମତ ହେଲେ ଓ ସିଂହାସନ ଛାଡ଼ି ବନ୍ଦୀ ରୂପେ ଠିଆ ହେଲେ ।

ସେବକମାନଙ୍କ ସହାୟତାରେ ରାଜା ବିଜୟପାଳ ଆସି ସିଂହାସନରେ ବସିଲେ । ବିକ୍ରମକୁ ଥରେ ଦେଖି ନେଇ ସେ କହିଲେ, "ପୁଅ, ମୁଁ ଦେଖିଲି ତୁମେ ଖୁବ୍ କୁଶଳୀ ଯୋଦ୍ଧା । ପ୍ରଥମ ପ୍ରଥମ ଯେପରି ଭାବରେ ମୋ ନିର୍ଦ୍ଦେଶିତ ବ୍ୟୂହମାନ ତୁମେ ବ୍ୟର୍ଥ କରିଦେଲ, ତାହା ତୁମ ଅସାଧାରଣ ବୁଦ୍ଧିର ପରିଚୟ ଦିଏ । କିଏ କହିବ, ହୁଏତ ମୋର ପରାଜୟ ଘଟିଥାନ୍ତା ! ମୁଁ ରୋଗ ଶଯ୍ୟାରେ ପଡ଼ିଥିଲି ବୋଲି ମୋ ସମ୍ମାନ ବଞ୍ଚାଇବା ପାଇଁ ମୋ ସୈନ୍ୟମାନେ ପ୍ରାଣମୂର୍ଚ୍ଛା ଲଢ଼ି ତୁମକୁ ହରାଇଲେ । କିନ୍ତୁ ମୋ ହସ୍ତରେ ହାରି ତୁମର ଗୌରବ ହାନି ହୋଇ ନାହିଁ । ଜଗତକୁ ଏହା ଜଣାଇବା ନିମନ୍ତେ ତୁମ ସହ ମୋ କନ୍ୟାର ବିବାହ ହେବ ବୋଲି ମୁଁ ଘୋଷଣା କରୁଛି ।"

ଜୟଧ୍ୱନି ଓ ଆନନ୍ଦକୋଳାହଳ ମଧ୍ୟରେ ବିକ୍ରମ ଚୁପ୍ ରହିଲେ । ବିବାହ ସମ୍ପନ୍ନ ହେଲା । ଅବଶ୍ୟ ପରେ ପରେ ପୁଣି ରାଜା ଶଯ୍ୟାଶାୟୀ ହେଲେ । ବର୍ଷକ ପରେ ନାତିର ମୁହଁ ଦେଖି ସେ ପ୍ରାଣ ତ୍ୟାଗ କଲେ ।

କିନ୍ତୁ ଶେଷ ପର୍ଯ୍ୟନ୍ତ ବିଦର୍ଭର ପରାଜୟ କଥା ସେ ଜାଣିଲେ ନାହିଁ ।



# କାହାର ମୂଲ୍ୟ ବେଶୀ ?

ଥରେ ଶିବପୁର ଗାଁକୁ ବନ୍ୟା ଆସିଲା । ଆହୁରି ଅଧିକ ପାଣି ମାଡ଼ିଆସିବାର ସମ୍ଭାବନା ଥିବାରୁ ଗ୍ରାମବାସୀମାନେ ଏକ ଦୂରବର୍ତ୍ତୀ ସ୍ଥାନ ଅଭିମୁଖେ ବାହାରିଲେ ।

ନଈ ପାରି ହୋଇ ନିରାପଦ ସ୍ଥାନକୁ ଯିବାକୁ ହେବ । ଖଣ୍ଡିଏ ବୋଲି ଡଙ୍ଗା । ସମସ୍ତେ ଯାଇ ତହିଁ ଉପରେ ବସିଲେ । ଡଙ୍ଗା ଠିକ୍ ଛାଡ଼ିବ, ସେତିକବେଳେ ଗାଁର ଶେଷ ଦୁଇ ଜଣ ଆସି ପହଞ୍ଚିଗଲେ ।

ଜଣେ ହେଲେ ଗାଁର ସବୁଠୁ ବଡ଼ ଧନୀ-କୃପଣ; ଅନ୍ୟ ଜଣକ ଭିକାରି ।

"ଆଉ ମାତ୍ର ଜଣେ ଡଙ୍ଗାରେ ବସିପାରିବେ, କିଏ ଆସିବେ ସ୍ଥିର କର !" ଡଙ୍ଗାବାଲା ଗାଁ ଲୋକଙ୍କୁ କହିଲା ।

"ଭିକାରିଟିକୁ ଆଣ ।"

"କ'ଣ ହେଲା ! ମୁଁ ଥାଉ ଥାଉ ଭିକାରିଟିକୁ ନେଇଯିବ ? ସିଏ ତୁମର କ'ଣ ଉପକାର କରିବ ?" ଧନୀ-କୃପଣ ପଚାରିଲା ।

"ବାବୁ, ଆମଠୁଁ ଭିକ୍ଷା ନେଇ ସେ ଆମକୁ ପୁଣ୍ୟ ଅର୍ଜନ କରିବାର ସୁଯୋଗ ଦେବ । ତୁମେ ? ତୁମଦ୍ୱାରା କାହାର ଛଦାମକର ଉପକାର ହେବ ନାହିଁ ।" ଲୋକେ କହିଲେ ।





# ନାମର ଗୁଣ

ଗୋକୁଳ ଦାସ ଥିଲା ଜଣେ ସାଧାରଣ ଗୃହସ୍ଥ । ଜମିଜମାରୁ ସାମାନ୍ୟ ଯାହା ଆୟ ହେଉଥାଏ, ସେଥିରେ ବହୁତ କଷ୍ଟରେ ଗୁଜୁରାଣ ମେଣ୍ଟୁଥାଏ । ଗୋକୁଳର ସ୍ତ୍ରୀ ତାକୁ କୌଣସି ବ୍ୟବସାୟ କରିବା ନିମନ୍ତେ ପରାମର୍ଶ ଦେଉଥାଏ । କିନ୍ତୁ ସେ ପାଇଁ ତ ପୁଞ୍ଜି ଲୋଡ଼ା ! ଯେଉଁ ସାମାନ୍ୟ କେତୋଟି ଟଙ୍କା ସେ ସଞ୍ଚି ରଖିଥାଏ, ସେଥିରେ ବ୍ୟବସାୟ କାହୁଁ ହେବ ?

ଦିନେ ଦୁଇପହର ବେଳେ ଜଣେ ବୁଢ଼ୀ ଆସି ତା' ପିଣ୍ଡାରେ ବିଶ୍ରାମ କରୁଥାଏ । ସେ ପିଇବା ପାଇଁ ମୁନ୍ଦେଏ ପାଣି ମାଗିଲା । ପାଣି ପିଇ ଖୁସୀ ହୋଇ ସେ କହିଲା, "ମୋର କେହି ନାହିଁ । ତୁମ ଘରେ ମୋତେ ସ୍ଥାନ ଦେବ ?"

ଗୋକୁଳ କହିଲା, "ଆରେ ଭଉଣୀ ! ଆମେ ଗରିବ । କୌଣସି ପ୍ରକାରେ ଚଳିଯାଉ । ତୁମକୁ କ'ଣ ଖାଇବାକୁ ଦେଇପାରିବୁ ଯେ ତୁମେ ଆମ ଘରେ ରହିବ ? କିଛି ବେପାର କଲେ ହୁଅନ୍ତା । କିନ୍ତୁ ସେ ପାଇଁ ମୋର ପୁଞ୍ଜି ନାହିଁ ।"

"ତୁମେମାନେ ଯାହା ଖାଅ, ମୋତେ ସେଇ-ଥିରୁ ମୁଠିଏ ଦେଲେ ଚଳିଯିବ । ଆଉ ବେପାର କରିବା କଥା ଯଦି ଭାବୁଛ, ସେଥିରେ ମୁଁ ସାହାଯ୍ୟ କରିପାରିବି ।" ବୁଢ଼ୀ କହିଲା ।

"କି ଧରଣର ବେପାରରେ ତୁମେ ପୁଣି ସାହାଯ୍ୟ କରିପାରିବ ?" ଗୋକୁଳ କୌତୂହଳୀ ହୋଇ ପଚାରିଲା ।

ବର୍ତ୍ତମାନ ଆମ୍ବର ସମୟ । ମୋତେ ଭଲ ଆଚାର ତିଆରି କରିଆସେ । ଆମ୍ବ ଆଚାର ତିଆରି କରିବାରେ ବା କେଉଁ ପୁଞ୍ଜି ଲାଗିବ ? ଭାବି ଦେଖ । ମୋ ପ୍ରସ୍ତାବ କିଛି ଖରାପ ନୁହେଁ ।" ବୁଢ଼ୀ କହିଲା ।

ସୁଧାକର

ଗୋକୁଳକୁ ପ୍ରସ୍ତାବ ବେଶ୍ ଭଲ ଲାଗିଲା । ସେ ଆଚାର ପାଇଁ ଯାହା ମସଲାମସଲା ଆବଶ୍ୟକ, ତାହା କିଣିଆଣିଲା । ତିନିମାଇଲ ଦୂରରେ ଗୋଟିଏ ବଜାରରେ ଛୋଟ କାଚ କାରଖାନା ଥାଏ । ସେଥିରୁ କିଛି ଶିଶି କିଣିଲା ।

ଆଚାର ତିଆରି ହୋଇଯିବାରୁ ସେ ତାକୁ ବିକ୍ରିକରି ବାହାରିଲା । ବୁଢ଼ୀର ନାମ ଅନୁସାରେ ଆଚାରକୁ "ରାଧାବାଈର ଆଚାର" ବୋଲି ସେ ନାମ ଦେଇଥାଏ ।

ପ୍ରଥମେ ଅଳ୍ପ କେତେଜଣ ସେ ଆଚାର କିଣିଲେ ।

ଦୁଇ ତିନି ଦିନ ଭିତରେ "ରାଧାବାଈର ଆଚାର"ର ଖ୍ୟାତି ଏତେ ବଢିଗଲା ଯେ ଗୋକୁଳ ପଦାକୁ ବାହାରିବା ଅଳ୍ପ ସମୟ ଭିତରେ ସବୁ ଶେଷ ହୋଇଯାଏ । ସମସ୍ତଙ୍କ ତୁଣ୍ଡରେ "ରାଧାବାଈର ଆଚାର"ର ସୁଖ୍ୟାତି ।

ଗୋକୁଳ ବେଶ ଲାଭବାନ୍ ହେଲା । ବୁଢ଼ୀ ଲାଗିପଡ଼ି ଆଚାର ତିଆରି କରୁଥାଏ । ଯେମିତି ଆମ୍ବସମୟ ବିତିଗଲା, ସେମିତି ସେ ଲେମ୍ବୁ, ଅଁଳା ଓ ଅନ୍ୟାନ୍ୟ କେତେ ପ୍ରକାର ଆଚାର ତିଆରି ଆରମ୍ଭ କଲା । ସେସବୁର ମଧ୍ୟ ଭଲ କାଟତି ହେଲା ।

ଗୋକୁଳ ତେଣିକି ଦୋକାନଟିଏ ଖୋଲିଲା । ଅନ୍ୟମାନେ ଆସି ଦୋକାନରୁ ଆଚାର ଠେଲା-ଗାଡ଼ିରେ ବା ପାଛିଆରେ ନେଇଯାଇ ଗାଁଗଣ୍ଡା, ହାଟ ବଜାରରେ ବିକ୍ରି କରନ୍ତି । "ରାଧାବାଈର



ଆଚାର" ବୋଲି ଚିତ୍କାର ଶୁଣିଲେ ଗରାଖମାନେ ଧାଇଁ ଆସନ୍ତି ।

ଦୁଇ ବର୍ଷ ପରେ ହଠାତ୍ ଅଳ୍ପ ଜ୍ୱରରେ ରାଧାବାଈ ମରିଗଲା । ଗୋକୁଳ ହତାଶାରେ ଭାଙ୍ଗିପଡ଼ିଲା । ତା' ସ୍ତ୍ରୀ ତାକୁ ହିମ୍ମତ ଦେଇ କହିଲା, "ଚିନ୍ତା ନାହିଁ । ଆଚାର ତିଆରିର ସବୁ କୌଶଳ ମୁଁ ଶିଖିଛି । ଏଣିକି ନିଜ ନାମରେ ଆଚାର ଚାଲୁ କର ।"

"ଗୋକୁଳ ଦାସର ଆଚାର" ନାମ ଦେଇ ତେଣିକି ଆଚାର ବିକ୍ରି ଆରମ୍ଭ କରାଗଲା । ବାସ୍ତବିକ, ସେ ଆଚାରର ସ୍ୱାଦ ଓ ବୁଢ଼ୀ ତିଆରି କରୁଥିବା ଆଚାରର ସ୍ୱାଦ ଭିତରେ କୌଣସି ଫରକ୍ ନ ଥିଲା । କିନ୍ତୁ ସାତଦିନ ଭିତରେ ବିକ୍ରେତାମାନେ ଫେରିଆସି ଗୋକୁଳ ଦାସକୁ କହିଲେ, "ନାହିଁ ବାବୁ, ଇଏ ଚଳୁ ନାହିଁ । ଆମେ ଲୋକଙ୍କୁ ଯେତେ କହୁଛୁ ଯେ ଏ ଆଚାର ସେହି ପୂର୍ବର ଆଚାର, କେହି ଶୁଣୁନାହାନ୍ତି । ଚଖାଇଲେ ମଧ୍ୟ ସେମାନେ ବୁଝୁନାହାନ୍ତି ।"

"ଏବେ ଉପାୟ କ'ଣ ?" ଗୋକୁଳ ଦାସ ତା'ର ଜଣେ ବନ୍ଧୁଙ୍କୁ ପଚାରିଲା, "ଉପାୟ ଆଉ କ'ଣ ? ଏ ବ୍ୟବସାୟ ବନ୍ଦ କରିଦିଅ ।" ସେମାନେ ପରାମର୍ଶ ଦେଲେ, କିନ୍ତୁ ଅନ୍ୟ କୌଣସି ବେପାର ସକାଶେ ସେ ପ୍ରସ୍ତୁତ ନ ଥିଲା ।

ଗୋକୁଳ ଦାସ ମୁଣ୍ଡରେ ହାତ ଦେଇ ବସିଲା । ହଠାତ୍ ତା' ସ୍ତ୍ରୀ କହିଲା, "ରାଧାବାଈ ସିନା ନାହିଁ, କିନ୍ତୁ ତାହାରି ଉପାୟରେ ତ ମୁଁ ଆଚାର ତିଆରି କରୁଛି । ତେଣୁ ଏହାକୁ ରାଧା-ବାଈର ଆଚାର ବୋଲି କୁହା ନ ଯିବ କିଆଁ ?"

ପରଦିନଠାରୁ ପୁଣି "ରାଧାବାଈର ଆଚାର" ପ୍ରବର୍ତ୍ତିତ ହେଲା । ବାସ୍, ଦୁଇ ତିନି ଦିନ ଭିତରେ ବେପାର ପୁଣି ପୂର୍ବଭଳି ଜମିଆସିଲା । ଗୋକୁଳ ଦାସର ମୁହଁରେ ଫୁଲ ଫୁଟିଲା ।



# କ୍ଷୁଧାର କରାମତି

ଗଙ୍ଗାରାମ ଈଶ୍ୱରବାବୁଙ୍କ ଘରେ କାମ କରୁଥାଏ। ସେ କାମ କରେ ଭଲ, କିନ୍ତୁ ତା'ର ଭୀଷଣ କ୍ଷୁଧା। ଯେତେ ଖାଇବାକୁ ଦେଲେ ବି ତା'ର ତୃପ୍ତି ନ ଥାଏ।

ସେ ସୁଯୋଗ ପାଇଲେ ଗାଁର ଅନ୍ୟ ଥିଲାବାଲାଙ୍କ ଘରେ ପହଞ୍ଚିଯାଇ ସେମାନଙ୍କ ତୋଷାମଦ କରି ସେମାନଙ୍କ ଘରେ ମଧ୍ୟ ଭୋଜନ ପକାଏ। ଈଶ୍ୱରବାବୁ ତାକୁ ଆହୁରି ବେଶୀ ଖାଇବାକୁ ଦେଲେ। କିନ୍ତୁ ଫଳ କିଛି ହେଲା ନାହିଁ।

ସେ ଯେମିତି ଅନ୍ୟଘରକୁ ଯାଇ ମାଗିଯାଚି ନ ଖାଇବ, ସେଥିପାଇଁ ଈଶ୍ୱରବାବୁ ଜଣେ ସାଧୁଙ୍କଠାରୁ ଗୋଟିଏ ଚୂର୍ଣ୍ଣ ଆଣି ପାଣିରେ ଗୋଳାଇ ତାକୁ ପିଆଇଲେ। ତାହା ପିଇଲେ କ୍ଷୁଧା ଲାଗିବ ନାହିଁ।

ପରଦିନଠାରୁ ଗଙ୍ଗାରାମ କାମ କଲା ନାହିଁ। ଭୋଜନ ପାଇଁ ସିନା ସେ କାମ କରୁଥିଲା, ଭୋଜନର ଆବଶ୍ୟକତା ନ ରହିବାରୁ ସେ କାମ କରିବ କାହିଁ ?

ଈଶ୍ୱରବାବୁ ପୁଣି ସାଧୁଙ୍କ ପାଖକୁ ଦୌଡ଼ିଲେ; ଏଥର କ୍ଷୁଧା ଲାଗିବାର ଔଷଧ ଆଣିବା ପାଇଁ।





# ବାକ୍ୟରକ୍ଷା

ରାଜଶେଖର ତାଙ୍କ ପିଲାବେଳେ ଗୋଟାଏ ଦୁର୍ଯୋଗରେ ନିଜ ବାପା ମା' ତଥା ଧନ ସମ୍ପଦ ହରାଇଥିଲେ । ସେ ଥିଲେ ଅଭିଜାତ ବଂଶର ପିଲା । ଗାଁର ଅନ୍ୟମାନଙ୍କ ଦୟା ଉପରେ ନିର୍ଭର କରି ଦିନ କାଟିବା ତାଙ୍କୁ ଭଲ ଲାଗିଲା ନାହିଁ । ସେ ଯାଇ ତକ୍ଷଶୀଳା ନଗରୀରେ ପହଞ୍ଚିଲେ ।

ତକ୍ଷଶୀଳାରେ ଜଣେ ପ୍ରସିଦ୍ଧ ବୈଦ୍ୟ ତାଙ୍କୁ ଶିଷ୍ୟ ରୂପେ ଗ୍ରହଣ କଲେ । ଚିକିତ୍ସା ଶାସ୍ତ୍ରରେ ବ୍ୟୁତ୍ପତ୍ତି ଲାଭ କରି ସେ ଜଣେ ଦକ୍ଷ ଚିକିତ୍ସକ ରୂପେ ସୁନାମ ଅର୍ଜିଲେ ।

ଦିନେ ଜୟବର୍ମା ନାମକ ଜଣେ ବିଶିଷ୍ଟ ବ୍ୟକ୍ତି ତାଙ୍କ କନ୍ୟା ମୋହିନୀକୁ ଧରି ରାଜଶେଖରଙ୍କ ପାଖରେ ଆସି ପହଞ୍ଚିଲେ । ମୋହିନୀ ଅତ୍ୟନ୍ତ ରୂପବତୀ; ପୁଣି ଜଣେ ଖ୍ୟାତନାମା ଧନୀଲୋକଙ୍କ କନ୍ୟା । ତା' ବିବାହ ଖୁବ୍ ବଡ଼ ଘରେ ହେବା କଥା । କିନ୍ତୁ ଝିଅଟିର ପାଦରେ ଗୋଟାଏ ଦାଗ ଦେଖାଦେଇଥାଏ । ସନ୍ଦେହ ହେବାରୁ ଜୟବର୍ମା ତାକୁ ରାଜଶେଖରଙ୍କ ପାଖକୁ ନେଇ-ଆସିଥା'ନ୍ତି ।

ରାଜଶେଖର ଭଲ ଭାବରେ ପରୀକ୍ଷା କରି ଦେଖିଲେ, ସେ ଦାଗ ଗୋଟାଏ ଭୀଷଣ ବ୍ୟାଧିର ଲକ୍ଷଣ । ରୋଗ ପ୍ରାଥମିକ ଅବସ୍ଥାରେ ଥିବା ହେତୁ ଚିକିତ୍ସାଦ୍ୱାରା ତା'ର ପୂର୍ଣ୍ଣ ନିରାକରଣ ସମ୍ଭବ ବୋଲି ସେ ଜାଣିଥିଲେ ।

ଜୟବର୍ମାଙ୍କୁ ସେ ସବୁ ଖୋଲି କହିଲେ । ବର୍ମା ଆତଙ୍କରେ ଶିହରି ଉଠିଲେ । ସେ ବ୍ୟାଧି କଥା ପ୍ରଚାର ହୋଇଗଲେ ଝିଅର ବାହାଘର ହୋଇ ପାରିବ ନାହିଁ । ସମାଜ ସେ ବ୍ୟାଧିକୁ ଏଡ଼ାଇ ଚଳେ ।

କୃଷ୍ଣମୋହନ



କିନ୍ତୁ ରାଜଶେଖର ଜୟବର୍ମାଙ୍କୁ କହିଲେ, "ଆପଣ କୌଣସି ଚିନ୍ତା କରନ୍ତୁ ନାହିଁ । ଦୁଇ ବର୍ଷ ଚିକିତ୍ସା ପରେ ମୋହିନୀ ଦେହରେ ରୋଗର ଲେଶ ମାତ୍ର ରହିବ ନାହିଁ । ଆଉ, ଆପଣ ଓ ମୋ ଛଡ଼ା ଏ ରୋଗ କଥା କେହି ଜାଣିବେ ନାହିଁ । ମୋହିନୀ ନିଜେ ମଧ୍ୟ ନୁହେଁ ।"

ରାଜଶେଖର ମୋହିନୀ ନିମନ୍ତେ ଅଭିପ୍ରେତ ଔଷଧପତ୍ର ଗୋଟିଏ ସ୍ୱତନ୍ତ୍ର ପେଡ଼ିରେ ରଖି ସେଥିରେ ଚାବି ପକାଇଥିଲେ । ମୋହିନୀ ଔଷଧ ସେବନ କରି ଧୀରେ ଧୀରେ ବ୍ୟାଧି କବଳରୁ ମୁକ୍ତ ହେବାକୁ ଲାଗିଲା ।

ରାଜଶେଖରଙ୍କର ଥିଲେ ଦୁଇ ତିନିଜଣ ସହକାରୀ । ସେମାନେ ତାଙ୍କ ପାଖରୁ ଚିକିତ୍ସା ଶିଖୁଥା'ନ୍ତି । ତହିଁ ଭିତରୁ ଜଣେ ହେଲା ସୁବଳ; ସେ ମନେ ମନେ ମୋହିନୀକୁ ବାହାହେବାର ଅଭିଳାଷ ପୋଷଣ କରୁଥାଏ ।

କିନ୍ତୁ ସମାଜରେ ଜୟବର୍ମାର ସ୍ଥାନ ଯେତେ ଉଚ୍ଚରେ, ସେ ତା' ନିକଟକୁ ଯାଇ ପାରିବାର ସମ୍ଭାବନା ନ ଥିଲା । କେତେଥର ସେ ମୋହିନୀ ଓ ତା' ବାପାଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଚେଷ୍ଟା କରି ବିଫଳ ହୋଇଥାଏ ।

ଏଣେ ଦୁଇବର୍ଷ ପୂର୍ବରୁହିଁ ମୋହିନୀ ପୂରାପୂରି ରୋଗମୁକ୍ତ ହୋଇଗଲା । ତଥାପି କିଛିଦିନ ପାଇଁ ଚିକିତ୍ସା ବଜାୟ ରହିଥାଏ । ସେ ରୋଗମୁକ୍ତ ହୋଇଯିବା ମାତ୍ରେ ଜୟବର୍ମା ଜଣେ ସମ୍ଭ୍ରାନ୍ତ ଘରର ଯୁବକ ସହ ତା' ବିବାହ ପ୍ରସ୍ତାବ ପକାଇଲେ । ବିବାହର ଦିନ ପର୍ଯ୍ୟନ୍ତ ଧାର୍ଯ୍ୟ ହୋଇଗଲା ।

ଭିତରେ ଭିତରେ ଜଳିଗଲା ସୁବଳ । ଦିନେ ରାଜଶେଖର ସ୍ଥାନାନ୍ତର ଯାଇଥିବା ଅବସରରେ ସେ ମୋହିନୀର ଔଷଧ ପେଡ଼ି ଖୋଲି ଔଷଧପତ୍ର ପରୀକ୍ଷା କରି ମୋହିନୀର ବ୍ୟାଧି କ'ଣ ବୁଝିନେଲା ।

ଦୁଇ ଦିନ ପରେ ରାଜଶେଖର ଫେରିଲା ବେଳକୁ ସହର ସାରା ମୋହିନୀର ବ୍ୟାଧି ବିଷୟ ପ୍ରଚାର ହୋଇଯାଇଥାଏ । ବିବାହ ପ୍ରସ୍ତାବ

ଭାଙ୍ଗିଯାଇଥାଏ । ଜୟବର୍ମା ମୁଣ୍ଡରେ ହାତଦେଇ ବସିଥାନ୍ତି । ରାଜଶେଖର ଫେରିବା ମାତ୍ରେ ସେ ତାଙ୍କ ବିରୁଦ୍ଧରେ ଅଭିଯୋଗ କଲେ, "ଆପଣ କିପରି ଏ ସର୍ବନାଶ କଲେ ?"

ରାଜଶେଖର ସବୁ ଶୁଣି ମର୍ମାହତ ହେଲେ । ଅନୁସନ୍ଧାନ କରି ସେ ବୁଝିପାରିଲେ ଅପରାଧୀ କିଏ ।

ସେ ଜୟବର୍ମାଙ୍କୁ କହିଲେ, "ସୁବଳର ଅପରାଧର କ୍ଷମା ନାହିଁ । ଆପଣଙ୍କ ପ୍ରତିଷ୍ଠାରେ ସେ ଆଞ୍ଚ ଆଣିଛି । ମୋହିନୀର ବିବାହ ସେ ଭଣ୍ଡୁର କରିଛି । ସେ ଦଣ୍ଡିତ ହେବା ଉଚିତ ।"

ଜୟବର୍ମା ବିଚାରାଳୟରେ ସୁବଳ ନାମରେ ଅଭିଯୋଗ ଆଣିଲେ — ସେ ତାଙ୍କର ଝିଅ ବିଷୟରେ ମିଥ୍ୟା ପ୍ରଚାର କରି ତା'ର ଅନିଷ୍ଟ କରିଛି ।

ସାକ୍ଷୀ ରୂପେ ରାଜଶେଖର କହିଲେ, "ସୁବଳ କହୁଛି ମୋହିନୀ ବ୍ୟାଧିଗ୍ରସ୍ତା । ଏହା ମିଥ୍ୟା । ମୋହିନୀ ବ୍ୟାଧିଗ୍ରସ୍ତା ଥିଲା । କିନ୍ତୁ ବର୍ତ୍ତମାନ ନାହିଁ । ତେଣୁ ସୁବଳ ଯାହା କହୁଛି, ତାହା ମିଥ୍ୟାପ୍ରଚାର । ମୋହିନୀର ବିବାହ ତା'ର ପ୍ରଚାର ଫଳରେ ଭଣ୍ଡୁର ହୋଇଛି । ଯଦି ବର ବିବେକବାନ୍ ହୋଇଥାନ୍ତା, ତେବେ ଏହା ହୋଇ ନ ଥାନ୍ତା । ମୁଁ ବର ସ୍ଥାନରେ ଥିଲେ ମୋହିନୀକୁ ବିଭା ହେବାକୁ କଦାପି ଅସମ୍ମତ ହୋଇ ନ ଥାନ୍ତି ।"

ବିଚାରକ ସୁବଳକୁ ଦୁଷ୍ଟ ବୁଦ୍ଧି ପ୍ରଣୋଦିତ ବୋଲି ଆଖ୍ୟା ଦେଲେ । ସୁବଳ ପଳାଇ ଯାଇ ଦଣ୍ଡରୁ ବଞ୍ଚିଗଲା ।

ବିଚାର ସରିବା ମାତ୍ରେ ଜୟବର୍ମା ରାଜଶେଖରଙ୍କୁ କହିଲେ, ଆପଣ ନିଜ ବାକ୍ୟର ସତ୍ୟତା ପ୍ରମାଣ କରନ୍ତୁ । ଆପଣଙ୍କୁ ମୁଁ ମୋହିନୀ ପାଇଁ ବର ରୂପେ ମନୋନୀତ କଲି ।"

ରାଜଶେଖର ଆନନ୍ଦରେ ମୋହିନୀକୁ ବିବାହ କଲେ ।





# ଅଳସୁଆର ଗପ

ସୁବୋଧ ଭଳି ଅଳସୁଆ ଖଣ୍ଡ ମଣ୍ଡଳରେ ନ ଥିଲେ । ଏଣେ ଅଳସୁଆକୁ ତେଣେ ବାହା-ପିଆ । ବାପବୁଢ଼ା ଦିନଯାକ କ୍ଷେତରେ ଯାଇ କୃଷିବାସ କରେ । ସୁବୋଧ ସାରାଦିନ ତାସ୍ ବାଡ଼େଇ ନ ହେଲେ ଆଉ ଜଣେ ଦୁଇଜଣ ଅପଦାର୍ଥଙ୍କ ସହ ଗପ କରିକରି ସମୟ ଗଡ଼େଇ-ଦିଏ । ଗାଁର କୌଣସି କୌଣସି ବୟସ୍କ ଲୋକେ କେବେ କେବେ ତାକୁ କହୁଥିଲେ, "ହଇରେ, ତୋ ଭଳି ଭେଣ୍ଡିଆ ପୁଅ ଘରେ ବସିଥିବ, ଅଥଚ ବାପା ଯାଇ ବିଲରେ ସାରାଦିନ ଗଧ ଭଳି ଖଟୁଥିବ ! ତୋତେ ଲାଜସରମ ନାହିଁ ?"

ସୁବୋଧ ଉତ୍ତର ଦେଉଥାଏ, "ମୋର ଲାଜସରମ ଥାଇ ନ ପାରେ । କିନ୍ତୁ ବୁଦ୍ଧି ଅଛି । ବାପା ଯାହା ମରିପଡ଼ି କରିବେ, ମୁଁ ତାହା ଘରେ ଗୋଡ଼ ଉପରେ ଗୋଡ଼ ଦେଇ ବସି ଆରାମ କରୁ କରୁ କରିଦେଇ ପାରିବି ।"

ଲୋକେ ଏକଥା ସୁବୋଧର ବାପା ରମେଶଙ୍କୁ କହିଲେ । ରମେଶ ଭାବିଲା, "ବାସ୍ତବିକ, ମୁଁ ସବୁଦିନେ ସଂସାରରେ ନ ଥିବି । ପୁଅ କେଡ଼େ ଯାଇଛି ଟୋକା, ବେଳ ଥାଉ ଥାଉ ଥରେ ପରୀକ୍ଷା ହୋଇଯାଉ ।"

ସେ ସୁବୋଧକୁ ଡାକି କହିଲା, "ଦେଖ ବାପା, ମୁଁ ବହୁତ ଦିନ ବଞ୍ଚିଲି ଭଳି ଲାଗୁନାହିଁ । ଥରେ ତୀର୍ଥାଟନ କରିଆସେ । ଘର, ଜମିଜମା ସବୁ ମୋ ଅନ୍ତେ ତୋର । ତେଣୁ ତୋର ଯେଭଳି ଇଚ୍ଛା, ସେଇଭଳି ଦେଖାଶୁଣା କର ।"

ରମେଶ ଚାଲିଗଲା । ସୁବୋଧ ତାଙ୍କୁ କହି-ଦେଇଥାଏ, "କିଛି ଚିନ୍ତା ନାହିଁ । ମୁଁ ଠିକ୍ ବୁଝାସୁଝା କରିବି ।" କିନ୍ତୁ ସେ ଚାଲିଯିବା ପରେ ଟୋକା ବଡ଼ ଅଡୁଆରେ ପଡ଼ିଲା । କିଏ

ସୁଧା ଚୌଧୁରୀ



ଖରାରେ ବର୍ଷାରେ କ୍ଷେତକୁ ଯିବ ? କିଏ ଫସଲ ଜଗିବସିବ ?

ସେ ପଡ଼ୋଶୀ ମୋହନକୁ କହିଲା, "କକେଇ, ତୁମ ଜମିକୁ ଲାଗି ଆମ ଜମି । ତୁମେ ତ ନିଜ ଜମିରେ ବିହନ ବୁଣିବାକୁ ଯିବ । ସେତେ-ବେଳେ କୌଣସି ମୂଲିଆ ଲଗାଇ ଆମ ଜମିରେ ବିହନ ବୁଣି ଦିଅନ୍ତ ନାହିଁ ? ତୁମେ ଆଖି ରଖିଲେ ମୋର ବା ସେଠାକୁ ଯିବା ଦରକାର କ'ଣ ? ମୂଲିଆ ପାଇଁ ଯେତିକି ପଇସା ଲାଗିବ, ମୁଁ ଦେଇଦେଉଛି ।"

"ହଁ ବାପା, ତୁ ହେଲୁ ବୁଦ୍ଧିମାନ୍ ପିଲା । ତୁ ବୃଥାରେ ଶ୍ରମ କରିବୁ କାହିଁକି ? ମୁଁ ଅଛି; ଭୟ ନାହିଁ । ଖାଲି ବିହନ ବୁଣା କଥା, ଫସଲ କଟା ପର୍ଯ୍ୟନ୍ତ ସବୁ ମୁଁ ତଦାରଖ କରିପାରେ । ଅବଶ୍ୟ ମୂଲିଆଙ୍କ ମଜୁରି ତୋତେ ଦେବାକୁ ହେବ ।" ମୋହନ କହିଲା ।

"ସେଥିରେ ସନ୍ଦେହ ଅଛି ?" ଏହା କହି ମଜୁରି ବାବଦରେ ସୁବୋଧ ମୋହନକୁ ଆଗ-ତୁରା କିଛି ଟଙ୍କା ଦେଇଦେଲା । ଘରେ ଯାଇ ଗୋଡ଼ ଉପରେ ଗୋଡ଼ ଲଦି ବସିଲା ଓ ଗୁଣୁଗୁଣୁ ହୋଇ ନିଜକୁ ନିଜେ କହିଲା, "ବାପା ବାସ୍ତବିକ କେଡ଼େ ବୋକା ! ସେ ବି ତ ମୋହରି ପରି ଅନ୍ୟମାନଙ୍କ ଦ୍ୱାରା ନିଜର କାମ କରାଇନେଇ ପାରନ୍ତେ !"

ଯଥା ସମୟରେ ଫସଲ ଉପୁଜିବାର ଖବର ସେ ପାଇଲା । ଅରକ୍ଷିତ ବୋଲି ଗାଁର ଗୋଟାଏ ଟୋକା ଆସି ଦିନେ ତାକୁ କହିଲା, "ବାବୁ, ମୁଁ ପ୍ରତିବର୍ଷ ଆପଣଙ୍କ କ୍ଷେତରୁ ମୂଷା ମାରିଆସୁଛି । ଏ ବର୍ଷ କି ମାରିବି ତ ? ଏବେଠୁ ନ ମାରିଲେ ଫସଲ କାଟି ସଫା କରିଦେବେ ।"

"ତା' କ'ଣ ମୁଁ ଜାଣେନା । କିନ୍ତୁ ତୁ ସେ ବାବଦରେ କେତେ ପଇସା ନେବୁ ?" ସୁବୋଧ ବିଜ୍ଞ ଭାବରେ ପଚାରିଲା ।

"ଆପଣଙ୍କ ବାପା ଯେତିକି ଲେଖାଏ ଦିଅନ୍ତି, ମୂଷା ପିଛା ସୁଉକାଏ—ଆପଣ ବି ସେତିକି ଦେବେ !" ମୂଷାଧରା ଟୋକା କହିଲା ।

"ତା' ହେବ ନାହିଁ । ବାପାଙ୍କର ବିଶେଷ ବୁଦ୍ଧି ନାହିଁ । ମୁଁ ଗୋଟାକୁ କୋଡ଼ିଏ ପଇସା କରି ଦେବି । ଯଦି ରାଜୀ, ତେବେ ଯା ମୂଷା ମାରିବୁ । ନ ହେଲେ ମୁଁ ଅନ୍ୟ ଗାଁରୁ ମୂଷାଧରା ଆଣିବି ।" ସୁବୋଧ ଜଣାଇଦେଲା ।

"ହଉ ହେଲା, ଆପଣ ସେଇ ହିସାବରେ ଦେବେ !" ମୂଷାଧରା ଟୋକା କହିଲା ।

"ଆଉ ଗୋଟିଏ କଥା । ଯେତେ ମୂଷା ମାରିବୁ, ସମୁଦାୟ ମୋତେ ଆଣି ଦେଖାଇବାକୁ ହେବ ନ ହେଲେ ପଇସା ମିଳିବ ନାହିଁ । ବୁଝିଲୁ ?" ସୁବୋଧ କହିଲା ଓ ମନେ ମନେ ନିଜ ବୁଦ୍ଧିମତ୍ତାକୁ ପ୍ରଶଂସା କଲା ।



"ହଉ ବାବୁ ।" କହି ମୂଷାଧରା ଟୋକା ଚାଲିଗଲା । ସନ୍ଧ୍ୟାବେଳକୁ ସେ ଅଶିଗୋଟି ମଲା ମୂଷା ଆଣି ଦେଖାଇଲା ଓ ଷୋହଳ ଟଙ୍କା ଧରି ବିଦାୟ ନେଲା ।

ସୁବୋଧ ମୂଷା ପିଛା ପାଞ୍ଚ ପଇସା ବଞ୍ଚାଇଛି ବୋଲି ନିଜକୁ ନିଜେ ତାରିଫ୍ କଲା ।

ବାପା ଫେରିବା ସମୟ ଯେତିକ ଯେତିକ ପାଖେଇ ଆସୁଥାଏ, ସୁବୋଧ ସେତିକ ସେତିକ ଗର୍ବ ଅନୁଭବ କରୁଥାଏ । ବାପା ଆସି ସବୁ ଦେଖି ଭାବିବ, ସୁବୋଧ ନିଜେ ପରିଶ୍ରମ କରି ଯାହା ଯାହା ହେବା କଥା ସବୁ କରିଛି । କିନ୍ତୁ ସୁବୋଧ ଏକା ତା' ସାଫଲ୍ୟର ରହସ୍ୟ କଥା ଜାଣେ । ବୁଦ୍ଧି ବୁଦ୍ଧି ! କାଣିଚିଏ ବୁଦ୍ଧି ମାସକର ମେହେନତ୍ର ସହିତ ସମାନ । ବିଚାରା ବାପାଙ୍କୁ ଯାହା ଏତିକ ମାଲୁମ ନାହିଁ ! ସୁବୋଧ ତା' ବାପା ପ୍ରତି ମନେ ମନେ ଦୟା ଅନୁଭବ କରୁଥାଏ । ତା' ବେଳ କଟୁଥାଏ ବେଶ୍ ଆନନ୍ଦରେ ।

ଦିନେ ସେ ଜଣେ ସାଙ୍ଗ ଘରୁ ଫେରୁଛି, ଗାଁ ଦାଣ୍ଡରେ ସୁକୁମାର ବୋଲି ଚଷା ତାକୁ କହିଲା, "ବାବୁ, ତୁମ ଫସଲରେ ପୋକ ଲାଗିଲେଣି । ମୁଁ ମୋ ଜମିରେ ଔଷଧ ପକାଇବାକୁ ଯାଉଛି । ତୁମେ ବି ଚାଲ, ତୁମ ଜମିରେ ପକାଇବ ।"

"ତୁମେ ଯେବେ ଯାଉଛ, ମୁଁ ଯିବା ଦର-

କାର କ'ଣ ? ତୁମେ ଟିକଏ ତଦାରଖ କଲେ ମୋ ଫସଲରେ ବି ଔଷଧ ପଡ଼ିଯା'ନ୍ତା ! ଜଣେ ମୂଲିଆ ଡାକି ନେବ ମୁଁ ପଇସା ଦେଇଦେବି ।" ସୁବୋଧ ପ୍ରସ୍ତାବ ଦେଲା ।

"ତା' ନ ହେବ କାହିଁ!" ସୁକୁମାର କହିଲା । ସୁବୋଧ ତାକୁ ଜଣେ ମୂଲିଆ ପାଇଁ ଦିନକର ମଜୁରି ଦେଇଦେଲା ।

ଅବଶେଷରେ ଫସଲ କଟାହେବା ସମୟ ହେଲା । ତା' ବି ସୁବୋଧ କରାଇ ନେବା କଥା । ତେବେ ଅନ୍ତତଃ କ୍ଷେତକୁ ସେ ନିଜେ ଯାଏ ବୋଲି ବାପାଙ୍କୁ କହି ପାରିବ, ସେଥିପାଇଁ ସୁବୋଧ ଭୋର ବେଳେ ସେଆଡ଼େ ଗଲା ।

ସେହିଦିନ ଫସଲ କଟା ହେବା କଥା ।

କୁହୁଡ଼ି ହୋଇଥାଏ । ସେ କ୍ଷେତ କଡ଼ରେ କିଏ କିଏ କଥାବାର୍ତ୍ତା ହେଉଥିବାର ଶୁଣିଲା । ନିଜ ନାମ କାନରେ ପଡିବାରୁ ସେ କାନ ପାରିଲା ।

"ମୋ ଭାଗ୍ୟ ଭଲ । ଅଳସୁଆ ସୁବୋଧ ଦସ୍ତାରୁ ତାହାର ମୂଲରେ ମଜୁରି ଖଟାଇ ମୋ କ୍ଷେତର ବିହନ ବୁଣାଇଥିଲି । ଆଜି ତାହାରି ମୂଲରେ ମୋ ଫସଲ ବି କଟାହେବ । ତା' କ୍ଷେତରେ ଯେତିକି ଫସଲ ହୋଇଛି, ତାହା ଦୁଇଘଣ୍ଟା ପରେ କଟା ହୋଇଯିବ ।" ମୋହନ କହୁଥାଏ ।

"ମୁଁ ଖାଲି ପୋକ ମାରିବା ନାମରେ ଅଳସୁଆଠୁ ଯେତିକି ମାରି ପାରିଲି ।" ସୁକୁମାର କହିଲା ।

ଅଟ୍ଟହାସ୍ୟ କରିଉଠିଲା ଅରକ୍ଷିତ । ସେ କହିଲା "ମୂଷା ପିଛା କୋଡ଼ିଏ ପଇସା କେହି ଅସୁଲ କରିଛ ? ଅଳସୁଆଠୁଁ ମୁଁ ତା' କରିଛି —ପୁଣି ଜଣଜଣକ କ୍ଷେତରୁ ମାରିଥିବା ମୂଷାସବୁ ଦେଖାଇ ।"

ସୁବୋଧର ମୁଣ୍ଡ ବୁଲାଇ ଦେଲା । ସେ ତଳେ ବସିପଡ଼ିଲା ।



# ଏଥର ନିସ୍ତାର ନାହିଁ !

ରମେଶ ଗୋଟାଏ ଝିଅର ରୂପଲାବଣ୍ୟରେ ମୁଗ୍ଧ ହୋଇ ତାକୁ ବାହା ହୋଇପଡ଼ିଲା । କିନ୍ତୁ ଦେଖିବା ବେଳକୁ ସେ ଏଡ଼େ ମୁଖରା ଯେ ସେ ଯନ୍ତ୍ରଣାରେ ଛଟପଟ ହେବାକୁ ଲାଗିଲା । ତା' ଦୁଃଖ ବୁଝୁଥିବା ତା'ର ଜଣେ ବନ୍ଧୁ ତାକୁ ଥରେ କହିଲା, "ଗାଁକୁ ଜଣେ ସାଧୁ ଆସିଛନ୍ତି । ତାଙ୍କୁ ପଚାର । ସେ ତୋ ସମସ୍ୟାର କୌଣସି ସମାଧାନ କରିଦେଇପାରନ୍ତି ।"

ରମେଶ ତାହାହିଁ କଲା । ସାଧୁ ସବୁ ଶୁଣି ତାକୁ ଚୁପି ଚୁପି କହିଲେ, "ଆରେ ଭାଇ, ମୋ ମୁଖରା ସ୍ତ୍ରୀ ଜ୍ୱାଳାରେ ମୁଁ ସାଧୁ ହୋଇଛି । ତୋତେ ମୁଁ କି ପରାମର୍ଶ ଦେବି ?"

ରମେଶ ଆଉ ଗୋଟାଏ ଗାଁକୁ ଯାଇ ଜଣେ ଯୋଗୀଙ୍କୁ ଭେଟି ତା' ସମସ୍ୟା କଥା ଜଣାଇଲା । ଯୋଗୀ କହିଲେ, "ମୁଁ ବ୍ରହ୍ମଚାରୀ, ସଂସାର କ'ଣ ଜାଣେନା । ତେଣୁ ତୋ ସମସ୍ୟାର ପ୍ରତିକାର କରିବା ଭଳି ଯୋଗ୍ୟତା ମୋର ନାହିଁ ।"

ରମେଶ ମୁଣ୍ଡପୋତି ଘରକୁ ଫେରୁଛି, ଅନ୍ଧାରରେ ପଛରୁ କିଏ ପଚାରିଲେ, "କିହୋ, କ'ଣ ଏତେ ଦୁଃଖ ?" ସହାନୁଭୂତି ଆଶାରେ ରମେଶ ପ୍ରଶ୍ନକର୍ତ୍ତାଙ୍କୁ ସବୁ କହି ପଚାରିଲା, "ଆପଣଙ୍କ ପରାମର୍ଶ କ'ଣ ?"

ଭଦ୍ରଲୋକ କାନ୍ଦୁରା କଣ୍ଠରେ କହିଲେ, "ପରାମର୍ଶ ? ତୋତେ ପରାମର୍ଶ ଦେବ କିଏ ? ମୁଁ ମୋ ମୁଖରା ସ୍ତ୍ରୀଠୁଁ ନିସ୍ତାର ପାଇବା ପାଇଁ ଆତ୍ମହତ୍ୟା କଲି । ପ୍ରେତ ହୋଇ କେଇଦିନ ଶାନ୍ତିରେ ଥିଲି । କିନ୍ତୁ ସ୍ତ୍ରୀ ତେଣେ ଦୁଃଖ ଓ ରୋଗରେ ପଡ଼ି ଆଜି କାଲି ମରିବ । ମରି ପ୍ରେତ ହୋଇ ସେ ଆସି ମୋତେ ଜବଦ କରିବ । ଏଥର ମୋତେ ନିସ୍ତାର ଦେବ କିଏ ?"

ଏହା କହି ସେ ଅଦୃଶ୍ୟ ହୋଇ ଗଲେ । ରମେଶ ବୁଝିଲା ଯେ ମୃତ୍ୟୁ ମଧ୍ୟ ସମାଧାନ ନୁହେଁ ।



# ଫଟୋ-ପରିଚୟୋକ୍ତି-ପ୍ରତିଯୋଗିତା : ପୁରସ୍କାର ଟ ୨୫

## ପୁରସ୍କୃତ ପରିଚୟୋକ୍ତି ଅକ୍ଟୋବର ୧୯୭୯ ସଂଖ୍ୟାରେ ପ୍ରକାଶ ପାଇବ







- ★ ଉଭୟ ଫଟୋ ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଗୃର ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ।
- ★ ଅଗଷ୍ଟ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।
- ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ ୨୫.୦୦ ପୁରସ୍କାର ପଠାଯିବ ।
- ★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡ଼ରେ ଲେଖା ହୋଇ (ସେଥିରେ ଅନ୍ୟ କଥା ରହିବା ଅନୁଚିତ) ଜହ୍ନମାମୁଁ ଫଟୋ ପରିଚୟ ପ୍ରତିଯୋଗିତା, ଚନ୍ଦାମାମା ବିଲ୍ଡିଙ୍ଗ୍‌ସ୍, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ଜୁନ୍ ପ୍ରତିଯୋଗିତାର ଫଳ

ପ୍ରଥମ ଫଟୋ : "ବିସର୍ଜନ ପରେ ପୁଣି ଆବାହନ କରିବୁ ବରଷ ପରେ,"
ଦ୍ୱିତୀୟ ଫଟୋ : "ବରଷଟିଏ କି ବଞ୍ଚିବି ମୁଁ ପ୍ରଭୁ, ପୂଜିବାକୁ ଆଉ ଥରେ !"

ପୁରସ୍କାର ବିଜୟୀ : ଲମ୍ବୋଦର ଦାସ, ବାରଙ୍ଗ, ଅଟ୍ଠୋ, ବାଲେଶ୍ୱର ।
ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

**Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 2 & 3, Arcot Road, Madras-600 026 (India). Controlling Editor : NAGI REDDI.**

## 'ଜହ୍ନମାମୁଁ' ର ଗ୍ରାହକମାନଙ୍କ ପ୍ରତି

ଯଦି ଆପଣ ଆପଣଙ୍କ ଠିକଣା ବଦଳାଉଥାନ୍ତି, ତେବେ ପାଞ୍ଚ ତାରିଖ ପୂର୍ବରୁ ଆପଣଙ୍କ ଗ୍ରାହକ ନମ୍ବର ସମେତ ଦୟାକରି ଆମକୁ ସେକଥା ଜଣାଇ ଦେବେ । ନ ହେଲେ ପରବର୍ତ୍ତୀ ସଂଖ୍ୟା ନୂଆ ଠିକଣାରେ ପଠାଇବା ସମ୍ଭବ ହେବ ନାହିଁ ।

ଆପଣଙ୍କ ସହଯୋଗ ଆମର କାମନା ।

ଡଲ୍ଟନ୍ ଏଜେନ୍ସୀଜ୍, ମାଡ୍ରାସ-୬୦୦ ୦୨୬

DADDY MUMMY AND...




# ମୁଁ ମୋ ଏକ୍କୋ ସ୍କେଚ ପେନରେ ସବୁ ସ୍କେଚ କରେ

# EKCO

# ପେନ ସ୍କେଚ

ଏହାର ବିଭିନ୍ନ ରଙ୍ଗକୁ ପିଲାମାନେ ଭଲ ପାନ୍ତି । ଏଥିରେ ଡ୍ରଇଂ କରିବାକୁ ସେମାନେ ଖୁସି ହୁଅନ୍ତି । ଆପଣଙ୍କ ପିଲାଙ୍କ ଠାରେ ଯେଉଁ ସ୍ୱାଭାବିକ ପ୍ରତିଭା ରହିଛି ତାର ବିକାଶ ଘଟାନ୍ତୁ ଆପଣଙ୍କ ପିଲାଙ୍କୁ (ବାଳକ/ବାଳିକା) ଦିଅନ୍ତୁ ଏକ୍କୋ ସ୍କେଚ ପେନ ଥିବା ଏକ ଆକର୍ଷଣୀୟ ପ୍ୟାକେଟ୍ । ବିଭିନ୍ନ ଆକର୍ଷଣୀୟ ରଙ୍ଗରେ ସ୍କେଚ ପେନ ମିଳେ ।

EKCO SKETCH PEN FOR SKETCHING COLOURING • SIGNING

ବିକ୍ରେତା : କିରଣ ଏଣ୍ଡ କୋଃ
୭୩/୭୫ ଘାମଦେଃ ଷ୍ଟ୍ରୀଟ, ବମ୍ବେ-୪୦୦ ୦୦୧
ଟେଲିଫୋନ : ୩୧୪୪୩୧

ADVERTS/WP/216/OR/GB

**ଏକ୍କୋ ସ୍କେଚ ପେନରେ ଲେଖିବା ଖୁବ ଆନନ୍ଦଦାୟକ ।**

# ପପିନ୍ସର କାଗଜ କାରନାମା

## ଇଏ ଦିହେଁ ରାମ ଓ ଶ୍ୟାମ
## ତୁମ୍ଭର ସାଥୀ ପିଲେ ଦେଖେଇବେ ଆଜି
## ତୁମ୍ଭଙ୍କୁ କାଗଜର କାରନାମାରେ

### ତ୍ରିକୋଣ ଟୋପି

ଗୋଟିଏ ଏତେ ବଡ଼ କାଗଜ ନିଅ ଯାହାର ଲମ୍ବା ତାହାର ଚଉଡ଼ା ଠାରୁ ଦେଢ଼ ଗୁଣ ବଡ଼ । ଯେପରି ୫୧ x ୩୭ ସେ: ମି: (ଅବଶ୍ୟ କୌଣସି ଖବର କାଗଜର ପୁରା ଗୋଟାଏ ଫର୍ଦ ନେଇପାର) ।



ପ୍ରଥମେ କାଗଜକୁ ଉପରୁ ତଳ ଆଡ଼କୁ ରହିଥିବା ବନ୍ଦୁ ବନ୍ଦୁ ରେଖା ଉପରେ ଭାଙ୍ଗିଦିଅ । ତାପରେ ପୁଣି ସିଧା କରିଦିଅ । ଏବେ କାଗଜକୁ ପୁଣି ଦୁଇ ଭାଗରେ ଭାଙ୍ଗ, ଯେବେ ବନ୍ଦୁ ବନ୍ଦୁ ରେଖା ଦର୍ଶାଇ ଥିବା ତଳ ଶନ୍ଧ ଆଡ଼କୁ ଭାଙ୍ଗ ।



ଏହା ପରେ ଦୁଇ କୋଣକୁ ମଝି ପଟକୁ ଭାଙ୍ଗ ।





ଏବେ ତଳର ଦୁଇଟି ସ୍ତରକୁ ଉପର ପଟକୁ ଭାଙ୍ଗ । ଗୋଟିଏକୁ ଆଗପଟୁ ଏବଂ ଅନ୍ୟଟିକୁ ପଛ ପଟୁ । ବାସ, ଟୋପି ତିଆରି ପିନ୍ଧ ଏବଂ ହସ !









